ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଅଦୃଶ୍ୟ ମାନବ





ବିଶ୍ୱସାହିତ୍ୟ ଗ୍ରନ୍ଥମାଳା :

# ଅଦୃଶ୍ୟମାନବ

[ H. G. Wellsଙ୍କ ଲିଖିତ
The Invisible Manର ଓଡ଼ିଆ ରୂପାନ୍ତର । ]

ଅନୁବାଦ
ଶ୍ରୀ ବାବା ବୈଦ୍ୟନାଥ ପାଢ଼ୀ

ଗ୍ରନ୍ଥମନ୍ଦିର

# ଅଦୃଶ୍ୟମାନବ

ଇଂଲଣ୍ଡର ଗୋଟିଏ ଗ୍ରେଟ ରେଲଷ୍ଟେସନ ବ୍ରାମ୍ବଲହାର୍ଷ୍ଟ । ନିକଟବର୍ତ୍ତୀ ଆଇପିଂ ସହରକୁ ଯିବାକୁ ହେଲେ ଏହିଠାରେ ଓହ୍ଲାଇବାକୁ ହୁଏ ରେଲଗାଡ଼ିରୁ ।

ଫେବୃୟାରୀ ମାସ—ସନ୍ଧ୍ୟା ଆଗତ ପ୍ରାୟ । ହଠାତ୍ ଭୀଷଣ ଶୀତ ପଡ଼ିଥାଏ । ସ୍ଥାନୀୟ ଲୋକଙ୍କ ମତରେ ଏପରି ଶୀତ ଅନେକ ଦିନ ଧରି ପଡ଼ିନାହିଁ । ସନ୍ଧ୍ୟା ହେଉ ନହେଉଣୁ ରାସ୍ତା ଖାଲି ହୋଇ ଯାଇଛି । ସମସ୍ତେ ନିଆଁକୁଣ୍ଡ ପାଖରେ ବସି ନିଆଁ ପୋହି ପୋହି ଗପସପ କରିବାରେ ବ୍ୟସ୍ତ ।

ରେଲଷ୍ଟେସନରେ ଯାତ୍ରୀ ଭିଡ଼ ନାହିଁ । ଷ୍ଟେସନମାଷ୍ଟରବାବୁ ନିଜ ଅଫିସରେ ବସି କାମ କରୁଥାଆନ୍ତି । ସନ୍ଧ୍ୟା ଛଅଟା ବେଳେ ଗାଡ଼ି ଷ୍ଟେସନରେ ପହଞ୍ଚିବା କଥା । ଷ୍ଟେସନମାଷ୍ଟରବାବୁ ଦେହରେ ବର୍ଷାତି ଚଢ଼ାଇ ସବୁଜ ଆଲୋକ ଦେଖାଇବା ପାଇଁ ବାହାରିଛନ୍ତି ଅନିଚ୍ଛା ସତ୍ତ୍ୱେ । ଝିକ୍ ଝିକ୍ ଗାଡ଼ି ଆସି ଷ୍ଟେସନରେ ପହଞ୍ଚିଗଲା ଓ ଜଣେ ଯାତ୍ରୀ ଗାଡ଼ିରୁ ଓହ୍ଲାଇଲେ । ଯାତ୍ରୀ ଜଣକୁ ଦେଖି ଷ୍ଟେସନମାଷ୍ଟର ବିସ୍ମିତ ହୋଇଗଲେ । ଲୋକଟାର ପୋଷାକ ଅଜବ ଧରଣର । ମୁଣ୍ଡର ଟୋପିଟା କପାଳ ଯାଏଁ ନଇଁପଡ଼ିଛି । ଆଖି ଦୁଇଟାକୁ ଛାଡ଼ିଦେଇ ସମୁଦାୟ ମୁହଁଟିରେ ବ୍ୟାଣ୍ଡେଜ୍ ପଟି । ଆଖିରେ ମୋଟା ନୀଳ ଚଷମା । ପୁରା ହସ୍ତାନାରେ ହାତ ଦୁଇଟା ଲୁଚିଯାଇଛି । ମୁଣ୍ଡଠାରୁ ପାଦଯାଏ ପୋଷାକରେ ଆବୃତ । ତାହା ଉପରେ ବର୍ଷାତି କୋଟ ।

ଯାତ୍ରୀଜଣକ ଷ୍ଟେସନମାଷ୍ଟରବାବୁଙ୍କୁ ଟିକେଟଟା ବଢ଼ାଇ ଦେଇ ପଚାରିଲା—"ଏଇ ଆଇପିଂ ସହରରେ ଭଲ ହୋଟେଲ କେଉଁଠି ?"

ବସ୍ତୁସ୍ତ ଭବଟା ଦୂର କରିନେଇ ମାଷ୍ଟରବାବୁ ଜବାବ ଦେଲେ, "ପ୍ରଧାନ ରାସ୍ତାରେ ପ୍ରାୟ ଅଧମାଇଲଏ ଗଲେ ପାଇବେ ମିସେସ୍ ହଲ୍‌ଙ୍କ ହୋଟେଲ—'କୋଚ ଆଣ୍ଡ ହର୍ସେସ୍ ।' ସାରା ଆଇପିଂ ସହରରେ ତାହାଠାରୁ ଆଉ ଭଲ ହୋଟେଲ ନାହିଁ ।" ଏହା ଶୁଣିସାରି ଲୋକଟା ତରତର ହୋଇ ଷ୍ଟେସନ ଫାଟକ ପାରହୋଇ ପହଞ୍ଚିଲା ପ୍ରଧାନ ରାସ୍ତାରେ । ତାପରେ ଚାଲିଲା ମିସେସ୍ ହଲ୍‌ଙ୍କ ହୋଟେଲ ଆଡ଼କୁ । ତାହାର ହାତରେ ଥାଏ ଗୋଟିଏ କଳାରଙ୍ଗର ଟିଣ ବାକ୍ସ । ମୁଣ୍ଡ ଉପରେ ପଡ଼ୁଥାଏ ବରଫର ଗୁଣ୍ଡ, କାନ ଭିତରେ ପଶୁଥାଏ ହେମାଳ ପବନ । ଶେଷରେ ସେ ପହଞ୍ଚିଲା ସେହି ହୋଟେଲରେ ।

ମିସେସ୍ ହଲ୍‌ଙ୍କ ହୋଟେଲ ଆଜି ସରଗରମ । ଭଡ଼ାଟିଆ-ମାନେ ଦଳ ଦଳ ହୋଇ ନିଆଁକୁଣ୍ଡ ପାଖରେ ବସି ମାତିଥାଆନ୍ତି ଖୁସିଗପରେ । ପିଆଲା ପରେ ପିଆଲା କଫି ଶେଷହୋଇଯାଉଛି ।

ମିସେସ୍ ହଲ୍ ଗୋଟିଏ ଚୌକି ଉପରେ ବସି ତାଙ୍କର ଅତିଥିମାନଙ୍କର ଯେପରି କୌଣସି ଅସୁବିଧା ନ ହୁଏ ସେଥିପ୍ରତି ଲକ୍ଷ୍ୟ ରଖିଥାଆନ୍ତି । ମନଟା ତାଙ୍କର ଅତି ବ୍ୟସ୍ତ । ସନ୍ଧ୍ୟା ହୋଇଗଲା, କିନ୍ତୁ ମିଷ୍ଟର ହଲ୍ ଏହି ଦୁର୍ଦ୍ଦିନରେ ମଧ୍ୟ ବର୍ତ୍ତମାନ ସୁଦ୍ଧା ଫେରିନାହାନ୍ତି । ଏତିକିବେଳେ ଦରଜା ଠେଲି ଘର ଭିତରେ ପଶିଗଲା ସେହି ଅଜବ ପୋଷାକ ପିନ୍ଧିଥିବା ଲୋକଟା । ମିସେସ୍ ହଲ ପକ୍‌କା ହୋଟେଲବାଲି । ଗ୍ରାହକମାନଙ୍କୁ ଖୁସି କରି ସେମାନଙ୍କ ଠାରୁ ଟଙ୍କା ଆଦାୟ କରିବା ଉପାୟ ତାଙ୍କୁ ଭଲଭାବରେ ଜଣା ।

ଆଗନ୍ତୁକ ଦେଖିବା ସଙ୍ଗେ ସଙ୍ଗେ ସେ ସ୍ୱାଗତ ସମ୍ଭାଷଣ ଜଣାଇ ମଧୁର ସ୍ୱରରେ କହିଲେ, "ଆପଣ ମୋ ସହିତ ଆସନ୍ତୁ ।" ଏହା କହି ଅତିଥିଙ୍କୁ ସାଙ୍ଗରେ ନେଇ ହୋଟାଲ ଉପରକୁ ଉଠିଗଲେ ମିସେସ୍ ହଲ୍ । ଗୋଟିଏ ସୁସଜ୍ଜିତ କୋଠରୀ ଭିତରେ ପ୍ରବେଶ କରି କହିଲେ, "ଆପଣ ଏଇ କୋଠରୀରେ ରହନ୍ତୁ ।" ଅଗ୍ନିକୁଣ୍ଡରେ କାଠ ସଜାଇ ଦିଆଯାଇଥିଲା । ସେଥିରେ ନିଆଁ ଧରେଇ ଦେଇ ତା ନିକଟକୁ ଖଣ୍ଡିଏ ଆରାମ ଚୌକି ଟାଣିଆଣିଲେ ମିସେସ୍ ହଲ୍ ଓ କହିଲେ—"ଆପଣ ନିଜ ଦେହକୁ ଟିକିଏ ଉଷୁମ କରି ନିଅନ୍ତୁ, ମୁଁ ଆପଣଙ୍କ ଖାଇବା ପିଇବା ଯୋଗାଡ଼ କରୁଛି ।"

ହୋଟେଲବାଲୀର ମନଟା ଖୁବ୍ ଖୁସି । ଏହି ଦାରୁଣ ଶୀତ-କାଳରେ ଆଇଫି ସହରକୁ ବାସ କରିବା ପାଇଁ ଆସିବେ କୌଣସି ବାହାରର ଲୋକ, ଏତ କଳ୍ପନାତୀତ ବିଷୟ ! ଏହା ଛଡ଼ା କୌଣସି ଗ୍ରାହକ ତାଙ୍କ ହୋଟେଲକୁ ଆସି ଦର କଷାକଷି ନକରିବା ଓ ରହିବା ପୂର୍ବରୁ ଭଡ଼ା ପାଇଁ ଦୁଇଟା ମୋହର ଅଗ୍ରିମ ଦେବା କେବେ ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ ମିସେସ୍ ହଲ୍ । ବର୍ତ୍ତମାନ ଦେଖିବାକୁ ହେବ ଗ୍ରାହକଟିର ଯେପରି ଟିକିଏ ହେଲେ ଅସୁବିଧା ନ ହୁଏ, ସେ ଯେପରି ଠିକ୍ ସମୟରେ ଖାଦ୍ୟ ପାଏ ।

ଆଗନ୍ତୁକର ଖାଇବା ବ୍ୟବସ୍ଥା କରିବାକୁ ତାର ବିଶ୍ରାମ କକ୍ଷକୁ ଯାଇ ମିସେସ୍ ହଲ୍ ଦେଖିଲେ ସେତେବେଳ ପର୍ଯ୍ୟନ୍ତ ସେ ଆରାମ ଚୌକିଟାରେ ବସିଛି । ନିଆଁ ହାଉ ହାଉ ହୋଇ ଜଳୁଥିଲେ ମଧ୍ୟ ଆଶ୍ଚର୍ଯ୍ୟର କଥା ଲୋକଟା ତା ହାତରୁ ଦସ୍ତାନା, ମୁଣ୍ଡରୁ ଟୋପି କିମ୍ବା ଦେହରୁ କୋଟ୍ ଖୋଲିନାହିଁ । ହାତ ଦୁଇଟି ଛାତି ଉପରେ ରଖି ଲୋକଟା ଯେପରି ଗଭୀର ଚିନ୍ତାରେ ବୁଡ଼ିଯାଇଛି । ଟୋପି ଓ କୋଟ ଉପରେ ଜମିଥିବା ବରଫଖଣ୍ଡ ନିଆଁ ତାପରେ ତରଳି ଘରର

କାର୍ପେଟ୍‌ଟାକୁ ଓଦା କରିସାରିଛୁ । ଏତ୍ତପରି ଅସନା ଭଲଲାଗେନା ମିସେସ୍ ହଲ୍‌ଙ୍କୁ । ସେ ଟିକଏ ବ୍ୟସ୍ତହୋଇ କହିଲେ, "ଯଦି କହିବେ ଆପଣଙ୍କ ଟୋପି ଓ କୋଟ୍ ରନ୍ଧାଘରକୁ ନେଇ ଶୁଖାଇଦେବି ।"

ହୋଟେଲବାଲୀ ଆଡ଼କୁ ମୁହଁ ନ ଫେରାଇ ଲୋକଟା ଉତ୍ତର ଦେଲା, "ନାଁ, ନାଁ, ଥାଉ ସେ ସବୁ । ଏଗୁଡ଼ାକ ନ ପିନ୍ଧିଲେ ମତେ ଭଲଲାଗେନା ।"

ଉତ୍ତମ ଗ୍ରାହକଟିକୁ ବିରକ୍ତ କରିବା ଠିକ୍ ନୁହେଁ ଭାବି ମିସେସ୍ ହଲ୍ ଚାଲିଗଲେ ଓ ତାର ଖାଦ୍ୟପେୟ ନେଇ ପୁନରପି ଫେରି-ଆସିଲେ । ଦେଖିଲେ ସେ ଛିଡ଼ା ହୋଇଛି ଗୋଟିଏ ପଥର ମୂର୍ତ୍ତିପରି, ନିଶ୍ଚଳ ଭାବରେ । ସେ କଛି ସମସ୍ତ ଲୋକଟା ଆଡ଼କୁ ଚାହିଁ ରହିଲେ । ତାପରେ ଟେବୁଲ ଉପରେ ସଶବ୍ଦରେ ଖାଦ୍ୟଦ୍ରବ୍ୟ ରଖିଦେଇ ଦରଜାଟା ବନ୍ଦକରି ଚାଲିଗଲେ ।

ଖାଇସାରିବା ପରେ ଚାହା ପିଇବା ସାହେବମାନଙ୍କ ଅଭ୍ୟାସ । ମିସେସ୍ ହଲ୍ ଗୋଟିଏ ଅତି ଦାମିକା ଟ୍ରେ ଉପରେ ଚାହା ତିଆରିର ସମସ୍ତ ସରଞ୍ଜାମ ରଖି ସେଗୁଡ଼ିକୁ ଗୋଟିଏ ଦାମିକା ତଉଲିଆ ଘୋଡ଼ାଇ ନିଜେ ଧରି ଗଲେ ସେହି ଅଜବ ଲୋକ ଥିବା କୋଠରୀ ଭିତରକୁ । କବାଟ ଉପରେ ଥରେ ଦୁଇଥର ଖଟ୍ ଖଟ୍ ଶବ୍ଦ କରି ସେ ପଶିଗଲେ କୋଠରୀ ଭିତରେ । ପଶୁ ପଶୁ ଦେଖିଲେ ଲୋକଟି ଫଟ୍‌କିନା ବସିପଡ଼ିଲା ଟେବୁଲ ତଳେ—ବୋଧହୁଏ କୌଣସି ଜିନିଷକୁ ଘୋଡ଼ାଇବାପାଇଁ । ମିସେସ୍ ହଲ୍ ଦେଖିଲେ ଲୋକଟା କୋଟ୍ ଓ ଟୋପି ଓ ଜୋତା ଖୋଲିଦେଇ ଅଗ୍ନିକୁଣ୍ଡ ନିକଟରେ ଥିବା ଗୋଟିଏ ଚୌକି ଉପରେ ରଖିଦେଇଛି ଶୁଖାଇବା ପାଇଁ ।

ମିସେସ୍ ହଲ୍ ଦେଖିଲେ ଯେ ଅତିଥି ଜଣକ ମୁଣ୍ଡଟେକି ଚାହିଁରହିଛି ତାଙ୍କ ଆଡ଼କୁ ଅପଲକ ନେତ୍ରରେ । ଲୋକଟାର ଆଖି

ଦୁଇଟି ହାତରେ ପଟି ବନ୍ଧାଯାଇଛି ମୁହଁ ଟମମ । ତା କାନ ଦୁଇଟାରେ ମଧ୍ୟ ପଟି । ସେ ନାକ ତଳକୁ ଗୋଟିଏ ତଉଲିଆରେ ଘୋଡ଼ାଇଛି । ଆଖିରେ ତାର ମୋଟା ନାଳ ଚଷମା । ପିନ୍ଧିଛି ସେ ଗୋଟିଏ ଗାଢ ବାଦାମ ରଙ୍ଗର ଫତେଇ । ମୁଣ୍ଡ ଉପରେ ତାର ଝଲମଲ ରଙ୍ଗର ଶବନ୍ । ମୋଟ ଉପରେ କହିବ କୁଗଲେ ଲୋକଟା ଦେଖାଯାଉଥିଲା କଳ୍ପନାତୀତ ଭାବେ ଅଦ୍ଭୁତ । ସେହି ଅଦ୍ଭୁତ ବେଶ ଦେଖି ଚମକିପଡ଼ିଲେ ମିସେସ ହଲ ।

"ଏହିକ୍ଷଣି ଆପଣଙ୍କ ଜାମାଟା ଶୁଖାଇ ଦେଉଛି ।" —ଏହା କହୁ କହୁ ମିସେସ ହଲ୍ ବାହାରିଆସିଲେ ସେହି ଘର ଭିତରୁ । ଯାଉଁ ଯାଉଁ ସେ ମନକୁ ମନ କହିଲେ, "ଏ କି କାଣ୍ଡରେ ବାପା ? ଏପରି କୌଣସି ଜିନିଷ ତ ଦେଖିନି ।"

ଦୂରରେ ଲୀନ ହୋଇଗଲା ମିସେସଙ୍କ ପାଦ ଶବ୍ଦ । ଲୋକଟି ଟେବୁଲ ତଳୁ ଉଠି ଠିଆ ହୋଇଗଲା ଏବଂ ଝରକା ବନ୍ଦ କରିଦେଲା । ତାପରେ ନିଶ୍ଚିନ୍ତହୋଇ ସେ ଆହାର କରିବାକୁ ଲାଗିଲା ।

ରୋଷେଇଘର ଭିତରେ ମିସେସ୍ ହଲ ମନକୁ ମନ କହୁଥିଲେ— "ଆହା ବିଚରା ! କୌଣସି ଦୁର୍ଘଟଣାରେ ପଡ଼ିଥିଲା ବୋଧହୁଏ ! ତାହା ଯଦି ନ ହୋଇଥିବ, ତେବେ ନିଶ୍ଚୟ ମୁହଁଟିରେ ଅସ୍ତ୍ରୋପଚାର କରାଯାଇଥିବ । ଉଃ, କି ଭୟ ପାଇଲି ମୁଁ ସେହି ପଟିଗୁଡ଼ିକ ତା ମୁହଁରେ ଦେଖି !"

ଅଗ୍ନିକୁଣ୍ଡରେ କିଛି କୋଇଲା ପକାଇଦେଇ, ତା ଉପରେ ଅତିଥିର କୋଟ୍‌ଟା ଗୋଟିଏ ଆଲନାରେ ରଖିଦେଲେ ମିସେସ୍ ହଲ୍ । ନିଆଁ ଜଳିବା ପରେ ସେହି ଆଲନାଟା ରଖିଦେଲେ ଅଗ୍ନିକୁଣ୍ଡର ନିକଟରେ କୋଟ୍‌ଟା ଶୁଖାଇବା ଉଦ୍ଦେଶ୍ୟରେ ।

ଅତିଥିଙ୍କର ଆଉ କଣ ଦରକାର ଥାଇପାରେ ଏହା ବୁଝିବା ପାଇଁ ମିସେସ୍ ହଲ୍ ପୁଣି ଅତିଥିଙ୍କର କୋଠରୀକୁ ଗଲେ । ଅତିଥିଙ୍କୁ ଦେଖିବାକ୍ଷଣି ତାଙ୍କର ପୂର୍ବ ଧାରଣା ବଦ୍ଧମୂଳ ହୋଇଗଲା—ନିଶ୍ଚୟ ଅତିଥିଙ୍କର ନାକ ଓ ଓଠରେ ଜଖମ ହୋଇଛି । ତା ନହୋଇଥିଲେ ପିଇବାବେଳେ ଖାଇବା ସମୟରେ ମଧ୍ୟ ସେ ମୁହଁଟାକୁ ଏପରି ତଉଲିଆଦ୍ୱାରା ଢାଙ୍କି ରଖିଥାନ୍ତେ କାହିଁକି ?

ଲୋକଟା ବସିଛି ଗୋଟିଏ କୋଣରେ ଝରକା ଆଡ଼କୁ ପିଠି କରି । ମିସେସ୍ ହଲ୍‌ଙ୍କୁ ଏଥର ଦେଖିବା କ୍ଷଣି ସେ ଅତି କୋମଳ କଣ୍ଠରେ କହିଲେ, "ଷ୍ଟେସନରେ ପଡ଼ି ରହିଛି ମୋର ଜିନିଷପତ୍ର । ସେଗୁଡ଼ିକ ଦୟାକରି ଅଣାଇଦେଇପାରିବେ ?"

"କାଲି ନିଶ୍ଚୟ ଅଣାଇଦେବି ।"—ଉତ୍ତର ଦେଲେ ମିସେସ୍ ହଲ୍ ।

"କାଲି ଅଣାଇ ଦେବେ—ଆଜି ଆଣି ହେବ ନାହିଁ ? ଏକ ମାଲବୁହା ଗାଡ଼ି ହେଲେ ଥରକରେ ସବୁ ଜିନିଷ ଆଜି ନେଇ ଆସି ପାରିବ । ଏଠାରୁ ଷ୍ଟେସନଟା ତ ବେଶି ଦୂର ନୁହେଁ ?"

ମିସେସ୍ ହଲ୍ କହିଲେ, "ଷ୍ଟେସନକୁ ଯାଇଥିବା ରାସ୍ତାଟି ଆପଣ ଦେଖିଲେ ତ ? ସେହି ଉଠାଣି ରାସ୍ତାରେ, ବର୍ଷା କାଳରେ, ଏ ପାଗରେ କିଏ କ'ଣ ରାଜି ହବ ଷ୍ଟେସନକୁ ଗାଡ଼ି ନେବାପାଇଁ ? ଆପଣ ବୋଧହୁଏ ଜାଣିନାହାନ୍ତି—ଏଇ ଅଳ୍ପ ମାସ ପୂର୍ବେ ସେହି ଉଠାଣି ଉଠିଲାବେଳେ ଗୋଟିଏ ଗାଡ଼ି ଏକ୍‌ଦମ୍ ଓଲଟିଯାଇଥିଲା । ଗାଡ଼ି ଭିତରେ ବସିଥିଲେ ଜଣେ ଭଦ୍ରଲୋକ, ସଙ୍ଗେ ସଙ୍ଗେ ମରିଗଲେ ସେ । ଆଉ ତାଙ୍କ ଗାଡ଼ି ଚାଳକ ମଧ୍ୟ ମରିଗଲା ସଙ୍ଗେ ସଙ୍ଗେ । ସେହି ଘଟଣା ଜାଣି କେହି ଯିବାକୁ ରାଜି ହେବେ କି ?"

' ଦୁର୍ଘଟଣା ଘଟିବାକୁ ଥିଲେ ଘଟିବ।'' —ଆଉ ବେଶି କଛି କଳ୍ପନା କରିନଥିଲେ ।

ଦୁର୍ଘଟଣାର କଥା ଉଠାଇ ଅତିଥିର ନିଜସ୍ୱ ଦୁର୍ଘଟଣାର ଇତିହାସ ଟିକିଏ ବାହାର କରିବା ଅନୁସନ୍ଧିତ ରଖିଥିଲେ ମିସେସ୍—କିନ୍ତୁ ତାହା ହେଲା ନାହିଁ ।

ନୈରାଶ୍ୟରେ ସେହି କକ୍ଷ ତ୍ୟାଗ କଲେ ମିସେସ୍ ହଲ୍ ।

## ଦୁଇ

ପରଦିନ ସକାଳ—ମିସେସ୍ ହଲ୍ ରେଲଷ୍ଟେସନକୁ ଲୋକ ପଠାଇ ତାଙ୍କ ନବାଗତ ଅତିଥିର ସମସ୍ତ ଜିନିଷପତ୍ର ହୋଟେଲକୁ ନେଇଆସିଛନ୍ତି । ଜିନିଷପତ୍ର ଗୁଡ଼ିକ ମଧ୍ୟରେ ଅଛି ଦୁଇଟି ବଡ଼ ବଡ଼ ପ୍ୟାକିଂ କାଠବାକସ ଏବଂ ଦୁଇଟା ସୁଟ୍‌କେସ୍ । ପ୍ୟାକିଂବାକ୍ସ ଦୁଇଟାରେ ଖଣ୍ଡ ଖଣ୍ଡ ଶବ୍ଦ ଶୁଣାଯାଉଛି । ସେଥିରୁ ମନେହେଉଛି ଯେପରି ସେଗୁଡ଼ିକରେ କାଚବୋତଲ ଗୁଡ଼ାଏ ଅଛି । ଜିନିଷପତ୍ର ଆସିଯିବା ଖବର ପାଇ ଆଗନ୍ତୁକ ତଳମହଲକୁ ଓହ୍ଲାଇ ଆସି କୁଲିମାନଙ୍କୁ କହୁଛି, ବାକ୍ସ ଦୁଇଟା ଖୋଲି ତା ଭିତରେ ଥିବା ଜିନିଷପତ୍ର ତାର କୋଠରୀକୁ ନେଇଯିବା ପାଇଁ—ଠିକ୍ ସେତିକିବେଳେ ସେଠାରେ ପହଞ୍ଚିଲେ ମି: ଫାରେନ୍‌ହାଇଟ—ଗୋଟିଏ କୁକୁର ସାଙ୍ଗରେ ନେଇ । ସେ ଥିଲେ ମିସେସ୍ ହଲ୍‌ଙ୍କ ନିକଟତମ ପ୍ରତିବେଶୀ । କୁକୁରଟା ମୁନିବ ହାତରୁ ଜଞ୍ଜିର ଝିଙ୍କି ନେଇ ହଠାତ୍ ସେହି ଆଗନ୍ତୁକର ଗୋଟିଏ ପାଦ କାମୁଡ଼ି ଧରି ତା ପ୍ୟାଣ୍ଟର ତଳ ପାଖରୁ କିଛି ଅଂଶ ଛିଣ୍ଡାଇଦେଲା । ତେଣୁ ପୋଷାକ ବଦଳାଇବା ପାଇଁ ସେ ଉପର ମହଲକୁ ଚାଲିଗଲେ ।

ମିସେସ୍ ହଲ୍‌ଙ୍କ ସ୍ୱାମୀ ମିଷ୍ଟର ହଲ୍ ସେତେବେଳେ ଉପସ୍ଥିତ ଥିଲେ ହୋଟେଲରେ । ସ୍ତ୍ରୀଙ୍କଠାରୁ ସବୁକଥା ଶୁଣି ସେ ଆଗନ୍ତୁକର ଖବର ନେବାପାଇଁ ଧାଇଁଗଲେ ଦେ'ତାଲକୁ । ଭଦ୍ରଲୋକ ରହୁଥିବା ଘର ସାମନାରେ ପହଞ୍ଚି ସେ ଦେଖିଲେ ଘରର ଦରଜା ବନ୍ଦ । ଏତିକବେଳେ ଝଲକାଏ ଥଣ୍ଡା ପବନରେ ଦରଜାଟା ଖୋଲିଗଲା । ମିଷ୍ଟର ହଲ୍ ଘର ଭିତରକୁ ପଶିଗଲେ, କିନ୍ତୁ ଘର ଭିତରେ ଯାହା ଦେଖିଲେ, ସେଥିରେ ତାଙ୍କ ହୃତ୍‌ସ୍ପନ୍ଦନ ଯେପରି ବନ୍ଦହୋଇଗଲା । ସେ ଦେଖିଲେ ଗୋଟିଏ ଜାମା ଶୂନ୍ୟରେ ଘର ଭିତରେ ଏ ପାଖ ସେ ପାଖ ହେଉଛି । ଅବାକ୍ ହୋଇ ସେ ଏହି କାଣ୍ଡ ଦେଖୁଥିଲାବେଳେ ସେ ଜାମାଟି ସଜୋରେ ତାଙ୍କ ଆଡ଼କୁ ଆସି ତାଙ୍କୁ ମାରିଲା ଗୋଟିଏ ଘୁଷି । ଘୁଷି ଧକ୍କାରେ ମିଷ୍ଟର ହଲ୍ ଏକବାରକେ ଘରର ବାହାରକୁ ଛିଟିକିପଡ଼ିଲେ ଓ ଦରଜାଟା ସଙ୍ଗେ ସଙ୍ଗେ ବନ୍ଦ ହୋଇଗଲା ସଶବ୍ଦରେ । ମିଷ୍ଟର ହଲ୍ ତଳ ମହଲାକୁ ଖୁବ୍ ତରବରରେ ଓହ୍ଲାଇ ଆସିଲେ 'ଭୂତ' 'ଭୂତ' 'ଭୂତ' ଚିତ୍କାର କରି କରି ।

ମିଷ୍ଟର ହଲ୍‌ଙ୍କୁ ଏପରି ଭାବରେ ତଳକୁ ଦୌଡ଼ି ଆସିବା ଦେଖି ସମସ୍ତେ ବିସ୍ମିତ ହୋଇଗଲେ । ଦୁଇକପ୍ କଫି ଖାଇସାରିବା ପରେ ସେ ଟିକିଏ ପ୍ରକୃତିସ୍ଥ ହୋଇ ଯାହା ଯାହା ଘଟିଥିଲା ସବୁ କଥା ଗୋଟି ଗୋଟି କରି କହିଗଲେ । ମି. ହଲ୍‌ଙ୍କ କଥା ଶୁଣି ନାନା ଲୋକ ନାନା ମତ ଦେଲେ । କେବଳ ମିସେସ୍ ହଲ୍ ଟିକିଏ ରାଗିଯାଇ କହିଲେ, 'ତୁମ ମୁଣ୍ଡପାକ ସେହି ଭୂତ ! ସେ ସବୁ ବାଜେ କଥା ଆଉ ନ କହି ଏଥର କୁହ ଭଦ୍ରଲୋକ କିପରି ଅଛନ୍ତି ?' ଠିକ୍ ଏତିକବେଳେ ମିଷ୍ଟର ଫାରେନ୍‌ହାଇଟଙ୍କର କୁକୁରଟି ପୁଣି ଭୁକି ଉଠିଲା । କୁକୁରଟାର ଦୃଷ୍ଟିକୁ ଲକ୍ଷ୍ୟ କରି ସମସ୍ତେ ସିଡ଼ି ଆଡ଼କୁ ଚାହିଁ

ଦେଖିଲେ ଅଦ୍ଭୁତ ପୋଷାକ ପିନ୍ଧିଥିବା ସେହି ଲୋକଟା ସ୍ୟାଣ୍ଡ ବଦଳାଇ ତଳକୁ ଓହ୍ଲାଉଚି । ସେ ତଳକୁ ଓହ୍ଲାଇ ଆସି ତାର ଜିନିଷପତ୍ରଗୁଡ଼ିକ ଉପରକୁ ନେଇଯିବାକୁ ବରାଦ କଲା କୁଲିମାନଙ୍କୁ । ଏହି ସୁଯୋଗ ପାଇ ମିସେସ୍ ହଲ୍ ତାଙ୍କୁ ପଚାରିଲେ, "ଆପଣ ଭଲ ଅଛନ୍ତି ? କୁକୁରଟା ଆପଣଙ୍କୁ···?" ପ୍ରତ୍ୟୁତ୍ତରରେ ଲୋକଟା ଜଣାଇଲା ଯେ ତା'ର କିଛି ହୋଇ ନାହିଁ ।

କିଛି ସମୟ ପରେ ଅତିଥିର ପ୍ରାତଃଭୋଜନ ନେଇ ତାର କୋଠରୀ ଭିତରକୁ ଗଲେ ମିସେସ୍ ହଲ୍ । ଘରର ଅବସ୍ଥା ତାଙ୍କୁ କରିଦେଲା ଅବାକ୍ । ଘରସାରା ଶିଶି, ବୋତଲ, ନଡ଼ା, ଛିଣ୍ଡାକାଗଜ ଖେଳାଇ ହୋଇ ପଡ଼ିଛି । ଟେବୁଲଟି ଉପରେ ଖାଦ୍ୟଦ୍ରବ୍ୟଗୁଡ଼ିକ ରଖିବାପାଇଁ ମଧ୍ୟ ଜାଗା ନାହିଁ । ସେଇଠି ସଜାହୋଇ ରହିଛି ଛୋଟ ବଡ଼ ଆକାରର ଅନେକ ବୋତଲ । ଟେବୁଲଟା ପରିଷ୍କାର କରି ଗୋଟିଏ ପାଖରେ ଖାଦ୍ୟଦ୍ରବ୍ୟରଖି ମିସେସ ହଲ କହିଲେ—"ଇସ୍, ଘରଟା କି ଅପରିଷ୍କାର ହୋଇଛି । ସଫା କରି ଦେବା ପାଇଁ ଜଣେ ଚାକର ପଠାଇଦେବି କି ?"

ଲୋକଟା ମିସେସ୍ ହଲ୍‌ଙ୍କ ଆଡ଼କୁ ଚାହିଁ ରହିଲା । ସେ ଦେଖିଲେ ଯେ ଲୋକଟାର ଆଖିରେ ସେତେବେଳକୁ କଳାଚଷମାଟା ନାହିଁ । ସେ ଦେଖିବାକୁ ପାଇଲେ ତା କପାଳ ତଳେ ଚକ୍ଷୁ ବଦଳରେ କେବଳ ଦୁଇଟା କଳା ଗର୍ତ୍ତର ଗାର । ମିସେସ୍ ହଲ ତା ଆଡ଼କୁ ଚାହିଁବା ଦେଖି ସେ ସଚେତନ ହୋଇ ଉଠିଲା ଯେ ତା ଆଖିରେ ଚଷମା ନାହିଁ । ସେ ଶୀଘ୍ର ଶୀଘ୍ର ଚଷମାଟା ପିନ୍ଧିପକାଇ ରୁକ୍ଷ ଭାବରେ କହିଲା, "କାଲି ପରା ଆପଣଙ୍କୁ କହିଥିଲି, ମୋ ବିନାନୁମତିରେ କେହି ଏହି କୋଠରୀରେ ପାଦ ପକେଇବେ ନାହିଁ ।

ମିସେସ୍ ହଲ୍ ଦବଯିବା ମଣିଷ ନୁହଁନ୍ତି । ସେ ମଧ୍ୟ ଚଡ଼ା ଗଳାରେ ଜବାବ ଦେଲେ, "ଅନୁମନ୍ତ ତ ମଗା ହୋଇଥିଲ ! ଆପଣ ଯଦ ଶୁଣିପାରଲେ ନାହିଁ, ତେବେ ସେଇଠା କଣ ମୋର ଦୋଷ ? ଆପଣ କୋଠରିର ଦୁଆର ବନ୍ଦକର ରଖୁନାହାନ୍ତି—କଏ ମନା କରୁଛି ! ହଁ ଶୁଣନ୍ତୁ, ଆଜ ଗୋଟିଏ କଥା । ଆମ ହୋଟେଲରେ ଏହର ଅପରିଷ୍କାର ଭାବରେ ରହବା ଲୋକଙ୍କୁ ମୁଁ ପସନ୍ଦ କରେ ନାହିଁ ।" ମିସେସ୍ ହଲ୍ ଘରୁ ବାହାର ଆସିଲେ ଓ ସଙ୍ଗେ ସଙ୍ଗେ ଭିତରୁ ଦରଜାଟା ବନ୍ଦହୋଇଗଲା ।

ବେଳ ବୁଡ଼ଲା ବେଳକୁ ଖାଦ୍ୟ ନେଇ ସେହି ଘର ଭିତରକୁ ଗଲେ ମିସେସ୍ ହଲ୍ । ସକାଳେ ଘର ପରିଷ୍କାର କରାଯାଇଥିଲେ ହେଁ ଏବେସେ ଘରଟାସାରା କାଚଗୁଣ୍ଡ ଦେଖିବାକୁ ପାଇଲେ । ସେହି ଦୃଶ୍ୟ ଦେଖି ସେ ବିରକ୍ତିରେ କହଲେ, "ଦେଖୁଛି, ଆପଣ ତ ଭୟାନକ ଲୋକ ! ସକାଳେ ଘର ଭର୍ତ୍ତି ହୋଇଥିଲା ନଡ଼ା କୁଟାରେ, ବର୍ତ୍ତମାନ ଘରସାରା କାଚଗୁଣ୍ଡ । ଏପରି କଲେ ତ ମୁଁ ନରୁପାୟ !"

"ଘରର ଯଦ କିଛି କ୍ଷତି ହୋଇଥାଏ ତା ହେଲେ ଆପଣ ବିଲ୍ କରିପାରନ୍ତି ।"

"ବିଲ କରିବାର କଥାନୁହେଁ" ରୁକ୍ଷ କଣ୍ଠରେ କହଲେ ମିସେସ୍ ହଲ୍, "ଏଇଟା ହେଉଛି ଉଚିତ—ଅନୁଚିତ କଥା ।" କହି-ସାରିବା ସଙ୍ଗେ ସଙ୍ଗେ ସେ ବାହାର ଚାଲିଗଲେ ।

## ତିନି

"କୋଚ୍ ଆଣ୍ଡ ହର୍ସେସ୍" ହୋଟେଲରେ ସୁଖ ଦୁଃଖରେ ଦିନ କଟାଇବାକୁ ଲାଗିଲା ନବାଗତ ଅତିଥି । ମିସେସ୍ ହଲ୍‌ଙ୍କ

ସମ୍ଭବତ ମଝିରେ ମଝିରେ ଝଗଡ଼ା ହେଉଥିଲା ତାର । ତଥାପି ତାର ଅସୁବିଧା କିଛି ହେଉନଥିଲା କିମ୍ବା ତା କାର୍ଯ୍ୟରେ କୌଣସି ବାଧା ସେ ପାଉନଥିଲା ।

କ'ଣ କାର୍ଯ୍ୟ ଥିଲା ତା'ର ?

ବାହାର ଲୋକଙ୍କୁ ତା କାର୍ଯ୍ୟ କ'ଣ ତାହା ବୁଝାଇବା ଉପାୟ ନାହିଁ । ଘରର ଦରଜା ବନ୍ଦକରି ନିବିଷ୍ଟ ମନରେ ସେ କ'ଣ କରିପାଉଥିଲା ତାହା ସେ କେବଳ ଜାଣେ । ମିସେସ୍ ହଲ୍ ଏକମାତ୍ର ବ୍ୟକ୍ତି ଯେ କି ପ୍ରୟୋଜନାନୁଯାୟୀ ସେ ରହୁଥିବା କୋଠରୀ ଭିତରକୁ ଯିବାପାଇଁ ଅନୁମତି ପାଇଥିଲେ । ସେହି ଅନୁମତିର ସୁଯୋଗ ନେଇ ଦିନକୁ ତିନି ଚାରିଥର ସେ ଘର ଭିତରକୁ ଯାଉଥିଲେ ସତ; କିନ୍ତୁ ପ୍ରୟୋଜନାତିରିକ୍ତ ଏକ ସେକେଣ୍ଡ ମଧ୍ୟ ସେଠାରେ ଡେରି କରିବାର ଉପାୟ ନଥିଲା ତାଙ୍କର । ଡେରି କଲେ ଏହିପରି ଅର୍ଥବ୍ୟଞ୍ଜକ ଦୃଷ୍ଟିରେ ଅତିଥି ତାଙ୍କ ଆଡ଼କୁ ଚାହୁଁଥିଲା ଯେ ସେ ଯଥେଷ୍ଟ ଅପମାନିତ ବୋଧକରୁଥିଲେ । ଫଳରେ ସେ ସେହି ସ୍ଥାନ ଛାଡ଼ି ଆସିବାକୁ ବାଧ୍ୟହେଉଥିଲେ—କ୍ଷିପ୍ର ଗତିରେ ।

ତେବେ ସ୍ୱଳ୍ପ ଅବସର ଭିତରେ ସେ ଲକ୍ଷ୍ୟ କରୁଥିଲେ ଯେ ଅତିଥି ଯାହା କିଛି କାର୍ଯ୍ୟ କରୁଥିଲା, ତାହା ସେହି ଘରେ ଥିବା ଶହ ଶହ ବୋତଲ ଓ ଶିଶିକୁ ନେଇ । କୌଣସି ବୋତଲ ଖାଲି ନଥିଲା । କେଉଁ କେଉଁ ବୋତଲରେ ତରଳ ଦ୍ରବ୍ୟ ଥିଲା ତ ଆଉ କେଉଁ ବୋତଲରେ ଗୁଣ୍ଡ ବା ଦାନା ଆକାରର ଦ୍ରବ୍ୟ ଥିଲା । ସେହି ଘରେ ଥିଲା ଆହୁରି ଅନେକ ରକମର ଯନ୍ତ୍ରପାତି, ନଳ, ମାପିବା ଗିଲାସ, ପରୀକ୍ଷାନଳୀ ଇତ୍ୟାଦି । ମିସେସ୍ ହଲ୍ ଯେତେ-ବେଳେ ସେଇ ଘରକୁ ଯାଆନ୍ତି ସେତେବେଳେ ଅତିଥି ଜଣକ ନିଜ ମନକୁ ମନ କଥାହୋଇ ସେହି ଘରର ଗୋଟିଏ ପାଖରୁ ଅନ୍ୟ

ପାଖକୁ ବୁଲୁଥିବାର ଦେଖନ୍ତି । ବେଳେ ବେଳେ ଦୁଏତ ତିନଗୋଟି ବୋତଲରୁ ନାନା ପ୍ରକାର ଜିନଷ ଗୋଟିଏ ପରୀକ୍ଷାନଳୀରେ ଭର୍ତ୍ତି-କର ଗରମ କରୁଥାଏ ସ୍ପିରିଟଲ୍ୟାମ୍ପ ଉପରେ ରଖି । କମ୍ବା ପର୍ଯ୍ୟବେକ୍ଷଣ କରୁଥାଏ ବୋତଲ ଭିତରେ ଥିବା କୌଣସି ଜିନଷକୁ । ମଝିରେ ମଝିରେ ଏହି ସବୁ ଜିନଷ ସହ ବୋତଲ ଭାଙ୍ଗିଦେଇ ଘର ଭିତର ଅସନା କରିଦେଉଥାଏ ।

ଇତି ମଧ୍ୟରେ ଗୋଟିଏ ଗୁଜବ ଉଠିଲା ଆଇପିଂ ସହରରେ । ମିସେସ୍ ହଲ୍‌ଙ୍କ କାନରେ ମଧ୍ୟ ତାହା ପଡ଼ିଲା । ଗୁଜବ ହେଲା ଯେ ଲୋକଟା ଫେରାର ଆସାମୀ । ମାରାତ୍ମକ କୌଣସି ଅପରାଧ କରିଥିଲା ସେ । ପୁଲିସ ଭୟରେ ଛଦ୍ମବେଶ ଧାରଣ କରି ଲୁଚି ଲୁଚି ଘୂରି ବୁଲୁଛି ଏମିତି ଅଜବ ପୋଷାକରେ ।

ଠିକ୍, ଲୋକଟା ନିଶ୍ଚୟ ଫେରାର ଆସାମୀ । ପୁଲିସକୁ ଖବର ଦେବାକୁ ହେବ । ତେବେ ପୁଲିସ ଯଦି ପଚାରେ ଲୋକଟା ବିରୋଧରେ କି ଅଭିଯୋଗ ଅଛି ବୋଲି—ତେବେ କ'ଣ ଉତ୍ତର ଦିଆଯିବ ? ତାକୁ କେଉଁ ଅପରାଧରେ ଜଡ଼ିତ କରାଯିବ ? ଅନେକ ସମୟ ଧରି ମସ୍ତିଷ୍କ ଚାଳନା କଲେ ମଧ୍ୟ ଏହି ପ୍ରଶ୍ନର କୌଣସି ସନ୍ତୋଷଜନକ ସମାଧାନରେ ପହଞ୍ଚିପାରିଲେନି ମିସେସ୍ ହଲ୍ । ନିର୍ବିଘ୍ନରେ କୋଠରି ଭିତରେ ଶିଶି ବୋତଲ ଭାଙ୍ଗିବାକୁ ଲାଗିଲା ଆଗନ୍ତୁକ । ମିସେସ୍ ହଲ୍ ମନେ ମନେ ତା ଉପରେ ଯେତେ ବିରକ୍ତ ହେଲେ ମଧ୍ୟ ତାକୁ ଉଚ୍ଛେଦ କରିବାକୁ ଏକାନ୍ତ ନାରାଜ, କାରଣ ସେ ନିୟମିତ ରୂପେ ତାଙ୍କର ପ୍ରାପ୍ୟ ଦେଇଦେଉଛି ।

କିନ୍ତୁ ଆଗନ୍ତୁକର ସେହି ନଗଦ କାରବାରର ଦୁର୍ଭେଦ୍ୟକବଚ ଦିନେ ଛିଡ଼ି ତଳେ ପଡ଼ିଗଲା । ଦିନେ ବିଲ୍ ପାଇ ସେ କହିଲା, "ଦେଖନ୍ତୁ ମିସେସ୍ ହଲ୍, ମୁଁ ଅତି ଦୁଃଖିତ । ଏହି ବିଲ୍‌ର ପ୍ରାପ୍ୟ

ଆପଣ ଠିକଏ ତେଇରେ ପାଇବେ । ମୋର କିଛି ଅର୍ଥ ବିନେ ଦୁଇଦିନ ମଧ୍ୟରେ ଏଠାରେ ପହଞ୍ଚିବା କଥା । ସେହି ଅର୍ଥ ମୋ ହାତକୁ ଆସିବା ପର୍ଯ୍ୟନ୍ତ ଆପଣଙ୍କୁ ଅପେକ୍ଷା କରିବାକୁ ପଡ଼ିବ ।

ମିସେସ୍ ହଲ୍ ଅତିଥିର ଅନୁରୋଧ ପ୍ରତ୍ୟାଖ୍ୟାନ କରିପାରିଲେ ନାହିଁ ସିନା, ତା ପକ୍ଷ ନେଇ ଓକିଲାତିକରିବା ଉତ୍ସାହ ଆଉ ତାଙ୍କର ରହିଲାନାହିଁ । ଏହା ପୂର୍ବରୁ ତାହାର ଆକୃତି, ପ୍ରକୃତି ଓ ପେଶା ନେଇ ଯେତେବେଳେ କିଛି ସମାଲୋଚନା ହେଉଥିଲା, ମିସେସ୍ ହଲ୍ ନିଜେ ତାଙ୍କ ଅତିଥି ସପକ୍ଷରେ ଯୁକ୍ତି କରୁଥିଲେ ହାମପ୍ରେଂ, ଫାରେନ୍‌ସାଇଡ୍ ଓ କାସ୍ ପ୍ରଭୃତି ନିନ୍ଦୁକମାନଙ୍କ ସହିତ; କିନ୍ତୁ ବିଲ୍ ନକେଇବା ପଡ଼ିବା ପରେ ସେ ବଦଳିଗଲେ ।

ମିଷ୍ଟର କାସ୍ ଆଇପିଂ ସହରର ଏକମାତ୍ର ଔଷଧ ଦୋକାନର ମାଲିକ । ହୋଟେଲର ଅତିଥିଟି ଶିଶି ବୋତଲ ନେଇ ନାନା ରକମ ହଟଚମଟ ବିଦ୍ୟା ଦେଖାଉଥିବା ଶୁଣି ସେ ତାକୁ ଭବିଷ୍ୟତର ପ୍ରତିଦ୍ୱନ୍ଦ୍ୱୀ ବୋଲି ବିବେଚନା କରୁଥିଲେ । ସେ କହିଲେ—"ମତେ ସେ ଠକିପାରିବନି । ମୁଁ ତାର କୋଠରୀରେ ପଶି ତାର ଛଦ୍ମବେଶ ଖୋଲିଦେବି ।"

ମିସେସ୍ ହଲ୍ ତାଙ୍କର ସଙ୍କଳ୍ପରେ ବାଧା ଦେଲେନି । କେବଳ ସତର୍କ କରିଦେଇ କହିଲେ—"ବଡ଼ ବଦ୍‌ରାଗୀ ଲୋକଟା, ହୁସିଆର ଥିବ ତୁମେ ।"

ଗୋଟାଏ ଉପଲକ୍ଷ୍ୟ ଦରକାର ତା ସହିତ ଆଳାପ କରିବା ପାଇଁ । କାସ୍ ଠିକ୍ କଲେ ସ୍ଥାନୀୟ ଡାକ୍ତରଖାନା ପାଇଁ ଚନ୍ଦା ଆଦାୟ କରିବା ବାହାନାରେ ସେ ଯିବେ ।

ଅତିଥିର କୋଠରୀ ଦରଜାଟା ଅଧାଖୋଲା ଥିଲା । "କ୍ଷମା କରିବେ ଏହି ଅନଧିକାର ପ୍ରବେଶ ପାଇଁ ।" —କହି କହି ଘର

ଭିତରକୁ ପଶିଗଲେ କାସ୍ । ଦରଜାଟା ବନ୍ଦ ହୋଇଗଲା । ମିସେସ୍ ହଲ୍ ତାଙ୍କ ସହିତ ଆସିଥିଲେ, କିନ୍ତୁ ସେ ଭିତରକୁ ନ ଯାଇ ବାହାରେ ଦରଜା ନିକଟରେ ରହିଲେ ।

ଭିତରୁ କଥାବାର୍ତ୍ତା ଶୁଭୁଥିଲା ସତ, କିନ୍ତୁ କୌଣସି କଥା ସ୍ପଷ୍ଟ ଭାବରେ ଜଣାଯାଉନଥିଲା । ହଠାତ୍ ଶୁଣାଗଲା ଯେପରି ବିସ୍ମୟରେ ଚିତ୍କାର କରଉଠିଲା କେହି ଜଣେ । କେହି ଯେପରି ଦୌଡ଼ାଦୌଡ଼ି ଆରମ୍ଭ କରିଦେଲା କୋଠରୀ ଭିତରେ । ଗୋଟିଏ ଚୌକି ତଳେ ପଡ଼ିଗଲା ଶବ୍ଦକରି । ତାପରେ ଗୋଟାଏ କର୍କଶ ହସ । ତା ପରେ କାସ୍ ଅଲୁଳାୟିତ କେଶରେ ବାହାରକୁ ଦୌଡ଼ିଆସିଲେ । ତାଙ୍କ ମୁହଁଟା ଦେଖାଯାଉଥିଲା ରକ୍ତହୀନ । ମୁହଁ ବଙ୍କାଇ ପଛକୁ ଥରେ ଚାହିଁଦେଇ ସେ ଏକବାରେ ରାସ୍ତାକୁ ଦୌଡ଼ିଲେ ।

କାସ୍ ରାସ୍ତାରେ ଅଣନିଶ୍ୱାସୀ ହୋଇ ଚାଲିଗଲେ ବାନଟିଂଙ୍କ ଘରଆଡ଼କୁ । ଗ୍ରାମ ପ୍ରାନ୍ତରେ ବାନଟିଂଙ୍କ ଘର । ବାନଟିଂ ହେଲେ ଗ୍ରାମର ଧର୍ମଯାଜକ ।

ସେ ତାଙ୍କ ଘରେ ପହଞ୍ଚି ବାନଟିଂଙ୍କୁ ପଚାରିଲେ – ମୁଁ କଣ ପାଗଳପରି ଦେଖାଯାଉଛି ?

ବାନଟିଂ ବିସ୍ମୟରେ ପ୍ରଶ୍ନକଲେ – କଣ ହୋଇଛି ?

—ହୋଟେଲର ସେହି ଲୋକଟା···

—ହଁ, କଣ ହୋଇଥିଲା ତାର ?

—ହୋଇଥିଲା କଣ—ଶୁଣ ତାହାହେଲେ । ହୋଟେଲରେ ପହଞ୍ଚି ମୁଁ ଗଲି ଲୋକଟାର ରହିବା କୋଠରୀ ଭିତରକୁ । ମିସେସ୍ ହଲ୍ ବାହାରେ ରହିଲେ କାନପାତି ଆମର କଥାବାର୍ତ୍ତା ଶୁଣିବା ପାଇଁ । ଆମ ଏଠିକା ଡାକ୍ତରଖାନା ପାଇଁ ମୁଁ ତାକୁ କିଛି ଚାନ୍ଦା ମାଗିଲି । ଏହା ଶୁଣିବା ସଙ୍ଗେ ସଙ୍ଗେ ଲୋକଟା ନାକ ଟେକି

ହେଲା ଅସଭ୍ୟ ପର । ଏହା ଦେଖି ମୁଁ ବୃଥା କଥାଟା ବନ୍ଦ କରିଦେଇ ତାକୁ ଖୋସାମତ କରିବାକୁ ଆରମ୍ଭ କଲି । କହିଲି—ଶୁଣୁଛି, ଆପଣ ବୈଜ୍ଞାନିକ ଗବେଷଣାରେ ବ୍ୟାପୃତ ରହିଛନ୍ତି । ଏହି ଖୋସାମଦ ଫଳରେ ତା ମୁହଁରୁ ବାହାରି ଥିଲା କର୍କଶ ଶବ୍ଦ । ତାପରେ ଶର୍ଦ୍ଦି ହେଲେ ଜଣେଲୋକତା ନାକକୁ ଯେପରି କରିଥାଏ, ସେତା ନାକକୁ ସେହିପରି କଲା ।

ଖବରି ଏତେ ଲୁଗାପଟା ପିଏ ତା ଦେହରେ ଢାଙ୍କିଛି, ତାକୁ ସର୍ଦ୍ଦି ହେଲା କପରି ? ତା ସହିତ କଥାବାର୍ତ୍ତା କଲାବେଳେ ମୁଁ ଚାରିଆଡ଼କୁ ଆଖି ପକାଉଥିଲି ।

"କଣ ଦେଖିଲେ ?" ଉତ୍ସୁକ ହୋଇ ଜାଣିବାକୁ ଚାହିଁଲେ ପାଦ୍ରି ବାନଟିଂ ।

—ବିଭିନ୍ନ ଆକାର ଓ ରଙ୍ଗର ବୋତଲ ଆଉଣିଶି ଘରଟାସାରା ଭରି ରହିଛି । ମୁଁ ତାକୁ ପଚାରିଲି—କେଉଁ ବିଷୟରେ ଗବେଷଣା କରୁଛନ୍ତି ? କ'ଣ ଡାକ୍ତରୀ ବ୍ୟବସାୟ ସମ୍ବନ୍ଧରେ ? ଏହା ଶୁଣି ଲୋକଟା ଚିତ୍କାର କରି ଉଠିଲା—କଣ ଜାଣିବାକୁ ଆସିଛନ୍ତି, କୁହନ୍ତୁ ତ ? ଲୋକଟା ଗମ୍ଭୀରଭାବେ ପୁଣି ନାକ ଟେକିଲା ଓ କାଶିବାକୁ ଆରମ୍ଭ କଲା । ଖଣ୍ଡିଏ କାଗଜ ପଡ଼ିଥିଲା ତାର ଟେବୁଲ ଉପରେ । ହଠାତ୍ ଝରକାବାଟେ ଝଲକାଏ ପବନ ପଶି ସେହି କାଗଜ ଖଣ୍ଡିକ ଉଡ଼ିଗଲା । ଲୋକଟା ହାତ ଦୁଇଟାକୁ ଉପରକୁ ଟେକି ଡେଇଁପଡ଼ିଲା ଉଡ଼ନ୍ତା କାଗଜ ଖଣ୍ଡିକୁ ଧରିବା ପାଇଁ ।

"ହାତ ଦୁଇଟି ଉଠାଇବା କଣ ଅସ୍ୱାଭାବିକ ?" ପଚାରିଲେ ବାନଟିଂ ।

—ଜାମାର ହାତ ମଧ୍ୟରେ ଥିବା ହାତ ଉପରକୁ ଟେକିଲେ ଅସ୍ୱାଭାବିକ କହିବେନାହିଁ କେହି । କିନ୍ତୁ ହାତଟା ବଦଳରେ ଯଦି

ଭିତରେ ହାତ ନଥିବା ଜାମାର ହାତଟିଏ ସିଧା ଉପରକୁ ଉଠିଯାଏ—"

ବାନଟିଂ ଆଶ୍ଚର୍ଯ୍ୟାନ୍ୱିତ ହୋଇ କହିଲେ, "ବର୍ତ୍ତମାନ ବୁଝି-ପାରିଲି ତୁମେ ଏଠାକୁ ଆସି କାହିଁକି ଜାଣିବାକୁ ଚାହୁଁଥିଲ ତୁମେ ପାଗଳ ପରି ଦେଖାଯାଉଛ କି ନାହିଁ ! ତୁମ ପ୍ରଶ୍ନର ଉତ୍ତର ହେଉଛି —ତୁମେ ପାଗଳ ପରି ଦେଖା ଯାଉନ—କିନ୍ତୁ ତୁମର କଥା ଗୁଡ଼ିକ ପାଗଳର କଥା ପରି ଶୁଣାଯାଉଛି ।"

"ଆପଣଙ୍କର ଯାହା ଖୁସି ଆପଣ ତାହା କହିପାରନ୍ତି— ଦୃଢ଼ କଣ୍ଠରେ ଜବାବ୍ ଦେଲେ କାସ୍ । ସ୍ୱଚକ୍ଷୁରେ ପରିଷ୍କାରଭାବେ ଯାହା ଦେଖିଛି ତାହା ଆପଣଙ୍କ ଆଗେ କହିଲି । ମନୁଷ୍ୟ ହାତ ବା ପାଦ ହରାଇ କାଠର ହାତ ପାଦ ଯୋଡ଼ିଥାଏ । କିନ୍ତୁ ଲୋକଟାର ଜାମାର ହାତଟା ଭିତରେ ରକ୍ତ ମାଂସର ହାତ ବଦଳରେ ଗୋଟିଏ କାଠର ହାତ ମଧ୍ୟ ନଥିଲା । ଭିତରେ କିଛି ନଥିବା ଜାମାର ହାତଟା ମନକୁ ମନ ଉପରକୁ ଉଠିଲେ ଦେଖିବା ଲୋକ କଣ ଆଶ୍ଚର୍ଯ୍ୟ ନ ହୋଇ ରହିପାରିବ ? ହଁ, ସେ କାଗଜଖଣ୍ଡ ଯାଇ ବଆଁରେ ପଡ଼ିଗଲା । ଏହା ଦେଖି ଲୋକଟା ହତାଶଭାବେ ଚୌକି ଉପରେ ଆସି ବସିପଡ଼ିଲା । ମୋର ଦୁର୍ବୁଦ୍ଧି ହେଲା । ମୁଁ ସେତିକିବେଳେ ପଚାରିଦେଲି—କେଉଁ ଶଇତାନୀ ଶକ୍ତିର ସାହାଯ୍ୟରେ ତୁମେ ଜାମାର ହାତଟାକୁ ଏପରି ଉପରକୁ ଉଠାଇ ଦେଲ ? କୋଠରୀରେ ମୋର ଉପସ୍ଥିତି କଥା ସେ ପ୍ରାୟ ଭୁଲି ଯାଇଥିଲା । ମୋର ପ୍ରଶ୍ନ ଶୁଣି ଚମକି ଉଠି ଦୃଢ଼ ଭାବରେ କହିଲା —"କେବଳ ଜାମାର ହାତଟା···"

"ମିଛ କହନ୍ତି—ମୁଁ ସ୍ପଷ୍ଟ ଭାବରେ ଦେଖିଲି ।"

"ତୁମେ ସ୍ପଷ୍ଟ ଭାବରେ ଦେଖିଛ ?" ଏହା କହୁ କହୁ ଲୋକଟା ଉଠି ଛିଡ଼ାହେଲା ଓ ମୋ ଆଡ଼କୁ ଆଗେଇ ଆସିଲା । ଅଜଣା ଆଶଙ୍କାରେ ମୁଁ ମଧ୍ୟ ସଙ୍ଗେ ସଙ୍ଗେ ଛିଡ଼ାହେଲି । ତାର ମୂର୍ତ୍ତି ଏବଂ କଳା ଚଷମା ଢଙ୍କା ଚକ୍ଷୁ ଦେଖିଲେ ଯେ କୌଣସି ଲୋକ ଭୟ ପାଇବ । ସେ ପକେଟ ଭିତରୁ ଜାମାର ହାତଟା ବାହାରକଲା ଅତି ଧୀରେ···ନିଃଶବ୍ଦରେ । ତା ପରେ ଜାମାର ହାତଟା ଅତି ଧୀରେ ସିଧା, ଲମ୍ବ ଭାବରେ ପ୍ରସାରିତ କରିଦେଲା ମୋ ଆଡ଼କୁ । ପ୍ରକୃତ ହାତ ନ ଥିବା ସେହି ଜାମାର ହାତଟା ମୋ ଆଡ଼କୁ ଯେଉଁ ଭଙ୍ଗୀରେ ଆସିଲା ସେଥିରୁ ଜଣାଗଲା ଯେ ପଞ୍ଝାଂକର ଗୋଟିଏ ଘୁଷି ବସିଯିବ ମୋ ନାକ ଉପରେ ।

"ତାପରେ ?"—ଅଧୀର ପ୍ରଶ୍ନ ବାନ୍‌ଟିଂଙ୍କର ।

"ତାପରେ ମନେହେଲା କଣ ଜାଣନ୍ତି—ଗୋଟିଏ ବୁଢ଼ା ଆଙ୍ଗୁଠି ଓ ଗୋଟିଏ ତର୍ଜନୀ ଏହି ଦୁଇଟି ଆଙ୍ଗୁଠି ଦୁଇ ଦିଗରୁ ମିଶି ମୋ ନାକଟାକୁ ଚିପିଧରି ଯେପରି ଖୁବ୍ ଜୋର୍‌ରେ ମକଚି ଦେଲା ।"

ବାନଟିଂ ହସିଉଠିଲେ ଏଥର ।

ସେ ହସ ଶୁଣି ରାଗି ଉଠିଲେ କାସ୍—"ହାତଟା ନାହିଁ—ଅଥଚ ହାତର ଆଙ୍ଗୁଠି ଦୁଇଟି ମୋର ନାକଟାକୁ ଚିପିଧରି ମକଚିଦେଲେ ଜୋର୍‌ରେ ! ମୋତେ ଭାରି କଷ୍ଟ ହେଲା । ଆପଣ ମୋର ଦୁଃଖ ଶୁଣି ହସିବେନ କାହିଁକି ? ଯଦି ମୋ ଅବସ୍ଥାରେ ପଡ଼ିଥାନ୍ତେ ତେବେ ଯିନା ବୁଝିଥାନ୍ତେ ! ତେବେ ମୁଁ ତାକୁ ଛାଡ଼ିନା । ସେହି ଜାମାର ହାତଟା ଉପରେ ମାରିଦେଲି ଗୋଟିଏ ଘୁଷି । ତାପରେ ଦୌଡ଼ ପଳାଇଲି କୋଠରୀ ବାହାରକୁ ।"

କାସ୍ କିଛି ସମୟ ନୀରବରେ ବସିଗଲେ । ତାପରେ ଭୟ-ମିଶା କଣ୍ଠରେ ଫୁସ୍ ଫୁସ୍ କରି କହିଲେ,"ତାର ଜାମାର ହାତକୁ ଘୁଷି ମାରିଲା ବେଳେ କଣ ମନେହେଲା ଜାଣନ୍ତି ? ମନେହେଲା ଯେପରି ରକ୍ତ ମାଂସର ଏକ ହାତ ଉପରେ ବାଜିଗଲା ଘୁଷିଟା, ଅଥଚ ପ୍ରକୃତରେ ଏକ ହାତ ଥିଲାପରି ଦେଖାଯାଉନଥିଲା ।"

ପାଦ୍ରି ବାନଟିଂ ଡାକ୍ତର କାସ୍‌ଙ୍କ କଥା ଶୁଣି ସାରିବା ପରେ କହିଲେ, "ଖାସା ମଜା ଗପ ତ ! ତାହାହେଲେ ତୁମେ ଗୋଟାଏ କାମ କର—ଗପଟା ଲେଖି କୌଣସି ପତ୍ରିକାକୁ ପଠାଇଦିଅ ! ଭୂତ ଗପର ଲେଖକ ହିସାବରେ ତୁମର ବେଶ୍ ନାମ ହୋଇଯିବ ।"

କ୍ରମେ ଏହି କାହାଣୀ ଆଇପିଂ ସହରରେ ବ୍ୟାପିଗଲା । ସେହି ସହରର ଅଧିକାଂଶ ଲୋକ ଡାକ୍ତରକାସ୍‌ଙ୍କୁ ଭଲପାଉଥିଲେ । ତାଙ୍କ କଥାକୁ ଅବିଶ୍ୱାସ କରିବ କିଏ ? କ୍ରମଶଃ ସେହି ସହରର ଅଧିବାସୀଙ୍କ ମନରେ ବଦ୍ଧମୂଳ ବିଶ୍ୱାସ ହୋଇଗଲା ଯେ ମିସେସ୍ ହଲ୍‌ଙ୍କ ନବାଗତ ଅତିଥି ପ୍ରକୃତରେ ଗୋଟିଏ ଭୂତ—ମଣିଷ ନୁହେଁ ।

## ଚୋର

ପୂର୍ବ ଘଟଣା ଘଟିବାର ପରଦିନ ରାତିରେ ହଠାତ୍ କୌଣସି ଶବ୍ଦ କାନରେ ପଡ଼ିବା ଫଳରେ ନିଦ ଭାଙ୍ଗିଗଲା ମିସେସ୍ ବାନଟିଂ-ଙ୍କର । ତାଙ୍କର ମନେହେଲା ବାରଣ୍ଡାରେ କିଏ ଯେପରି ପଦଚାରଣ କରୁଛି । ସେ ମି. ବାନଟିଂଙ୍କୁ ଉଠାଇଲେ । ଲଣ୍ଠନଟା ଧରି ଘର ବାହାରକୁ ଗଲେ ମିଷ୍ଟର ଓ ମିସେସ୍ ବାନଟିଂ । ତାଙ୍କର ମନେହେଲା କିଏ ଯେପରି ତଳମହଲାରେ ଥିବା ବୈଠକଖାନା ଖୋଲୁଛି ।

ତାଙ୍କର ମନରେ ଦୃଢ଼ ଧାରଣା ଜନ୍ମିଲା ଯେ ଗ୍ରେଭ ବୈଠକଖାନାର ଦ୍ୱାର ଖୋଲୁଛି । ହାତରେ ଏକ ଲାଠି ଓ ଲଣ୍ଠନ ଧରି ସ୍ୱାମୀ ସ୍ତ୍ରୀ ନିଃଶବ୍ଦରେ ତଳମହଲାକୁ ଓହ୍ଲାଇଲେ । ବୈଠକଖାନା ଦ୍ୱାର ପାଖରେ ଲଣ୍ଠନଟା ସ୍ତ୍ରୀଙ୍କ ହାତରେ ଦେଇ, ଲାଠିଟା ଖୁବ୍ ଜୋରରେ ଧରି ଭିତରେ ପ୍ରବେଶ କଲେ ମିଷ୍ଟର ବାନଟିଂ । କିନ୍ତୁ ଘରେ ତ କେହି ନାହିଁ ? ଗ୍ରେଭ ଗଲା କୁଆଡ଼େ ? ବିହ୍ୱଳ ଭାବରେ ଏଣେ ତେଣେ ଚାହିଁଲେ ମିଷ୍ଟର ବାନଟିଂ । ଆଲୁଅଟି ଧରି ତାଙ୍କ ପଛରେ ଛିଡ଼ାହୋଇଥିଲେ ମିସେସ୍ ବାନଟିଂ ।

ଠିକ୍ ଏହି ସମୟରେ ଘଟିଲା ଗୋଟିଏ ଅଦ୍ଭୁତ ଘଟଣା । ମି: ବାନଟିଂଙ୍କ ଟେବୁଲର ଡ୍ରୟରଟା ବାହାରିଆସିଲା-ହଠାତ୍ ସତେ ଯେମିତି କେହି ତାହାକୁ ଟାଣିଆଣିଲା । ତାପରେ ହଠାତ୍ କେତେ ଖଣ୍ଡ ନୋଟ୍ ଶୂନ୍ୟରେ ଉଡ଼ିବା ଦେଖାଗଲା । ତାପରେ ନୋଟ୍ ଗୁଡ଼ିକ ଅଦୃଶ୍ୟ ହୋଇଗଲା ମନକୁମନ । ଏହା ଦେଖି ମିସେସ୍ ବାନଟିଂ ଭୟରେ ଆବାକାବା ହୋଇଗଲେ । କିନ୍ତୁ ମି: ବାନଟିଂ ଭୀତ ହେଲେ ମଧ୍ୟ ସାହସ ବାନ୍ଧି ଚାଲିଗଲେ ସେହି ଟେବୁଲ ନିକଟକୁ । ସେଇଠି ଠିଆ ହୋଇ ଗମ୍ଭୀର ସ୍ୱରରେ କହିଲେ— "ହାତ ଟେକ ଠିଆହୁଅ, ନଚେତ୍ ତୁମର ମରଣ ସୁନିଶ୍ଚିତ ।" ସଙ୍ଗେସଙ୍ଗେ ଗୋଟିଏ ପ୍ରଚଣ୍ଡ ଧକ୍କାରେ ମିଷ୍ଟର ବାନଟିଂ ପଡିଗଲେ ତଳେ । ତାଙ୍କର ମନେହେଲା, କେହି ଯେମିତି ତାଙ୍କୁ ଧକ୍କା ମାରି ଚାଲିଗଲା । ତାହାର ପାଦର ଶବ୍ଦ ସେ ପରିଷ୍କାର ଭାବେ ଶୁଣିବାକୁ ପାଇଲେ, କିନ୍ତୁ କାହାକୁ ଦେଖି ପାରିଲେ ନାହିଁ । ଆଲୁଅଟା ହାତରେ ଧରି ଦରଜା ସାମନାରେ ଠିଆ ହୋଇଥିଲେ ମିସେସ୍ ବାନଟିଂ । ସେ ଏହା ଦେଖି ଭୟରେ କମ୍ପିଲେ । ପାଦ ଶବ୍ଦଟା ଖୁବ୍ ଦ୍ରୁତଗତିରେ ତାଙ୍କ ଆଡ଼କୁ ଆସି ତାଙ୍କୁ ମଧ୍ୟ ମାରିଲା ଗୋଟିଏ

ଜୋର୍ ଧକ୍କା । ସେ ତଳେ ପଡ଼ି ଅଚେତ ହୋଇଗଲେ । ତାଙ୍କ ହାତରୁ ଲଣ୍ଠନଟା ଛିଟିକି ପଡ଼ି ଲିଭିଗଲା । ପୂର୍ବ ଆକାଶ ସେତେବେଳକୁ ଫରଚ୍ଛ ହୋଇଆସୁଥିଲା ।

× × × ×

ଖୁବ୍ ଭୋରରୁ ଉଠିବା ଅଭ୍ୟାସ ଥିଲା ମିଷ୍ଟର ହଲ୍‌ଙ୍କର । ସେଦିନ ଭୋରରୁ ଉଠି ସେ ଲକ୍ଷ୍ୟ କଲେ ଯେ ତାଙ୍କର ସେହି ଅଦ୍ଭୁତ ପୋଷାକଧାରୀ ଅତିଥିର କୋଠରୀଟି ଖୋଲା ହୋଇ ରହିଛି । ରାତିରେ ଭଦ୍ରଲୋକ ଦରଜା ବନ୍ଦ କରିବାକୁ ଭୁଲିଯାଇଛନ୍ତି ଭାବି ମି. ହଲ୍ ତଳକୁ ଓହ୍ଲାଉଛନ୍ତି, ଠିକ୍ ସେହି ସମୟରେ ତାଙ୍କ ଦୃଷ୍ଟି ଯାଇ ପଡ଼ିଲା ସଦର ଦରଜା ଉପରେ । ସଦର ଦରଜାଟା ଏତେ ଭୋରରୁ କିଏ ଖୋଲିଲା ? ପୂର୍ବଦିନ ରାତିରେ ସେ ନିଜେ ସେହି ଦରଜାଟା ବନ୍ଦ କରିଥିଲେ । ତେବେ କଣ ସେହି ଭଦ୍ରଲୋକ ତା କୋଠରୀ ଭିତରେ ନାହିଁ ? ମିଷ୍ଟର ହଲ୍ ସାହସ ବାନ୍ଧି ପଶି-ଗଲେ କୋଠରୀ ଭିତରକୁ । ଘର ଭିତରର ଦୃଶ୍ୟ ଦେଖି ସେ ଆବାକାବା ହୋଇଗଲେ । ଲୋକଟାର ସମସ୍ତ ପୋଷାକ ଜମାହୋଇ ରହିଛି ଚୌକିଟା ଉପରେ । ଆଉ କାଳବିଳମ୍ବ ନକରି ମି· ହଲ୍ ଦୌଡ଼ି ଯାଇ ନିଜ ସ୍ତ୍ରୀକୁ ଡାକି ଆଣିଲେ । ଏହି ସମୟରେ ସଦର ଦରଜା ବନ୍ଦ ହେବାର ଶୁଣାଗଲା । ମିସେସ୍ ହଲ୍ ପଚାରିଲେ, "ସଦର ଦରଜା କିଏ ବନ୍ଦ କଲା ?"

"କିଏ ଜାଣେ କିଏ ବନ୍ଦ କଲା ?"

ମିସେସ୍ ହଲ୍ କୋଠରୀ ଭିତରକୁ ପଶିଗଲେ । ତାଙ୍କ ସ୍ୱାମୀ ଦୁଆର ମୁହଁରେ ଠିଆହେଲେ । ମିସେସ୍ ହଲ୍ ଖଟରେ ପଡ଼ିଥିବା ବିଛଣାରେ ହାତ ମାରି ଚମକି ଉଠିଲେ । ବିଛଣାଟା ଏକବାରେ

ଥଣ୍ଡା ! ତ ମାନେ ଗଛ ସାଗ କେହ୍ନ ସେଠାରେ ଶୋଇ ନାହିଁ ।
ଏତିକବେଳେ ସେ ହଠାତ୍ ଲକ୍ଷ୍ୟ କଲେ ବିଛଣାର ଲୁଗାଗୁଡ଼ାକ ଉପର
ଶୂନ୍ୟରେ ଉଡ଼ିଗଲା ଏବଂ ଶୂନ୍ୟରେ କିଛି ସମୟ ଘୂରିବା ପରେ
ତଳେ ପଡ଼ିଗଲା । ପର ମୁହୂର୍ତ୍ତରେ ସେ ଲକ୍ଷ୍ୟ କଲେ ଯେ ଟୋପିଟା
ଚୌକି ଉପରୁ ଶୂନ୍ୟରେ ଉଠିଯାଇ କିଛି ସମୟ ଘୂରିବାକୁ ଲାଗିଲା

ଏହିସବୁ ଘଟଣା ଦେଖି ମିସେସ୍ ହଲ୍ ଭୟରେ ହତବାକ୍
ହୋଇଗଲେ । ଚିତ୍କାର କରି ତାଙ୍କ ସ୍ୱାମୀ ବା ଅନ୍ୟ କାହାକୁ
ଡାକିବାର ସାହସ ସେ ହରାଇଥିଲେ । ଖୁବ୍ ଥଣ୍ଡା ପଡ଼ୁଥିଲେ ମଧ୍ୟ
ଭୟରେ ତାଙ୍କ ଦେହରୁ ଗମ୍ ଗମ୍ ଝାଳ ବୋହିବାକୁ ଲାଗିଲା ଓ
ତଣ୍ଟି ଶୁଖିଗଲା । ଏହାପରେ ସମୟରେ ଗୋଟିଏ ଚୌକି ଶୂନ୍ୟରେ
ଉଡ଼ି ଉଡ଼ି ମିସେସ୍ ହଲ୍‌ଙ୍କ ଆଡ଼କୁ ଖେଦି ଆସିଲା । ଶେଷରେ
ତାଙ୍କ ପିଠିରେ ବସିଲା ଏକ ସଜୋର ଧକ୍କା । ମିସେସ୍ ହଲ୍
ଚାଲିଲେ ପଛେଇପଛେଇ ଦୁଆର ମୁହଁ ଆଡ଼କୁ । କିନ୍ତୁ କି ଆଶ୍ଚର୍ଯ୍ୟ,
ସେ ଘର ଭିତରୁ ବାହାରକୁ ଗୋଡ଼କାଢିବା ସଙ୍ଗେ ସଙ୍ଗେ କବାଟଟା
ଧଡ଼ାସ୍ କରି ବନ୍ଦହୋଇଗଲା । ମିସେସ୍ ହଲ୍ ଅଚେତ ହୋଇ
ତଳେ ପଡ଼ିଗଲେ । ମିଷ୍ଟର ହଲ ତାଙ୍କୁ ନେଇଗଲେ ନିଜ କୋଠରୀକୁ
ସେବା ଶୁଶ୍ରୂଷାରେ ଚେତନା ଲାଭ କରି ମିସେସ୍ ହଲ ମି. ହଲ୍‌ଙ୍କୁ
କହିଲେ—"ଏହା ନିଶ୍ଚୟ କୌଣସି ଭୂତର କାଣ୍ଡ । ଭୂତକୁ ଘର-
ଭଡ଼ା ଦେଇ ମୁଁ ମସ୍ତବଡ଼ ଭୁଲ କରିଛି । ନୋହିଲେ ଚୌକି
କେବେ ଶୂନ୍ୟରେ ଉଡ଼ିପାରେ ? ଯେମିତି ହେଉ ତାହାକୁ ଏଠାରୁ
ବିଦା କରିବାକୁ ହେବ । ତୁମେ ଗୁଣିଆକୁ ଖବର ଦିଅ ।"

ମିଷ୍ଟର ହଲ୍ ଗଲେ ଗୁଣିଆ ସନ୍ଧାନରେ । ମି· ଓସ୍ୱେଜାର୍ସ
ଜଣେ ନାମଯାଦା ଗୁଣିଆ । ଆଇପିଂ ସହରର ଆଖପାଖ ଦଶବାର-
ଖଣ୍ଡ ଗ୍ରାମ ମଧ୍ୟରେ ତାର ନାମଅଛି । ହଲ୍ ଯାଇ ତାର ଶରଣ

ପଶିଲେ ଓ ଓପ୍ସେଜାର୍ସଙ୍କୁ ସଙ୍ଗରେ ନେଇ ଆସିଲେ । ମିସେସ୍ ହଲ୍ ତାଙ୍କୁ ସମସ୍ତ ଘଟଣା କହିଗଲେ । ସବୁ ଶୁଣି ଓପ୍ସେଜାର୍ସର ମନରେ ଜାତ ହେଲା ଭୟ । ତଥାପି ମୂହଁଟାଣରେ କହିଲା— "ଯେତେବେଳେ ମୁଁ ଆସିଛି ଆପଣ ଆଉ ଭୟ କରିବାର କୌଣସି କାରଣ ନାହିଁ । ଭୂତ ଅଲବତ୍ ପଳେଇବ । ଚାଲନ୍ତୁ ମି. ହଲ୍, ମୋତେ ଦେଖାଇ ଦିଅନ୍ତୁ ସେହି ଲୋକର ରହିବା କୋଠରିଟା ।"

ମିଷ୍ଟର ହଲ୍ ଘୃଣାରେ କହିଲେ —"ଭୂତଟା ମୋ ଉପରେ ଏକଦମ୍ ରାଗିଯାଇଛି । ମୋ ଘର ଫଡ଼ିଲେ ତା ନାହିଁ ଜେଉଁଛି । ମୁଁ ସେଠାକୁ ଯାଇ କ'ଣ ମରଣ ବରଣ କରିବ ?"

ଏହି ସମୟରେ ସେହି ଅଜବ ପୋଷାକଧାରୀ ଲୋକଟା ସିଡ଼ି ବାଟେ ତଳକୁ ଆସି ଟିକିଏ ଲକ୍ଷ୍ୟ କରି କ'ଣ ଭାବିଲା କେଜାଣି ପୁଣି ଉପରକୁ ଉଠିଗଲା । ଉତ୍ସାହିତ ହୋଇ ଓପ୍ସେଜାର୍ସ କହିଲା, "ଦେଖନ୍ତୁ ମି· ହଲ୍ ! ମୁଁ ଯେ ଆସିଛି ତାହା ଭୂତ ଭଲଭାବରେ ବୁଝିପାରିଛି । ତେଣୁ ମୋତେ ସ୍ୱଚକ୍ଷୁରେ ଦେଖିବାକୁ ଆସିଥିଲା । କେତେ ମହା ମହା ଭୂତ ତଡ଼ି ଆସିଛି—ଏଇ ଘର ଟୋକାଟାକୁ ପାରିବ ନାହିଁ ? ଚାଲନ୍ତୁ ମି· ହଲ୍, ଆମେମାନେ ଉପରକୁ ଯିବା ।"

ସ୍ତ୍ରୀଙ୍କୁ ଖୁସି କରିବାକୁ ମି. ହଲ୍‌ଙ୍କୁ ଅଗତ୍ୟା ଯିବାକୁ ପଡ଼ିଲା ଓପ୍ସେଜାର୍ସ ସହିତ । ତାଙ୍କ ସହିତ ଆହୁରି ଅନେକ ଲୋକ ଗଲେ । ସମସ୍ତେ ପହଞ୍ଚିଲେ ସେହି କୋଠରି ସାମନାରେ । ବନ୍ଦ ଦରଜାରେ କରାଘାତ କଲା ଓପ୍ସେଜାର୍ସ ।

ଭିତରୁ କଡ଼ା ଶବ୍ଦ ଶୁଭିଲା, "କିଏ ! କଣ ଦରକାର ?"

ଓସ୍ୱେଜାର୍ସ ଥତମତ ହୋଇ ଜବାବ ଦେଲା, "ମୁଁ...ଆସିଛି ଭୂତ ଛଡ଼ାଇବାକୁ ।"

ରୁକ୍ଷକଣ୍ଠରେ ଭିତରୁ ଜବାବ ଆସିଲା, "ଥାଉ ଥାଉ, ତୁମର ଭୂତ ଛଡ଼ାଇବା ଦରକାର ନାହିଁ । ନିଜ କାମରେ ଯାଅ । ମୋତେ ବିରକ୍ତ କଲେ ପରିଣାମ ଭଲହେବନି କହିଦେଉଛି ।"

ଏହା ଶୁଣି ଓସ୍ୱେଜାର୍ସ ଅଗତ୍ୟା ବାଧ୍ୟ ହୋଇ ଫେରିଗଲା । ଗଲାବେଳକୁ କହିଗଲା, "ଦରଜା ଯେତେବେଳେ ଖୋଲିବ ସଙ୍ଗେ ସଙ୍ଗେ ମୋତେ ଜଣାଇବ । ମୁଁ ହେଲି ଗୁଣିଆ । ଭୂତ ଛଡ଼ାଇବା ହେଲା ମୋର କାମ—ଦରଜା ଭାଙ୍ଗିବା ଶକ୍ତି ମୋର ନାହିଁ ।"

## ପାଞ୍ଚ

ପାଦ୍ରି ସାହେବଙ୍କ ଘରେ ଚୋରି ହେବା ପରଦିନର ଘଟଣା । ପ୍ରାତଃଭୋଜନ ଆସିବାରେ ଡେରି ହେବାରୁ ନୂତନ ଅତିଥି ବିରକ୍ତିରେ ଘଣ୍ଟି ବଜାଇଲା; କିନ୍ତୁ ମିସେସ୍ ହଲ୍ ତାହା ଶୁଣିବାକୁ ନାରାଜ । ସେ ଯେ ହୋଟେଲର ପାଉଣା ଦେଇନାହିଁ !

ଏଣେ ସାରା ପଡ଼ାରେ ଯେତେ ଦୁଷ୍ଟ ପିଲା ଥିଲେ ହୋଟେଲରେ ଗୋଟାଏ ଭୂତ ଥିବା ଖବର ପାଇ ସେଠାରେ ଜମା ହୋଇଥାନ୍ତି ସେଦିନ ଠେଙ୍ଗାବାଡ଼ି ନେଇ । ହୋଟେଲର ସବୁ ସ୍ଥାନରେ ଦଳ ଦଳ ହୋଇ ଠିଆ ହୋଇଥାନ୍ତି ସେମାନେ ସେହି ଭୂତଟିକୁ ଉପଯୁକ୍ତ ଶାସ୍ତି ଦେବାପାଇଁ । ଅତିଥି ଏହା ଜାଣିପାରି ନିଜ କୋଠରି ଭିତରେ ରହି ସେମାନଙ୍କୁ ଗାଳି ଓ ଧମକ ଦେବାରେ ଲାଗିଛି ନାନାଭାବରେ ।

ଘଣ୍ଟା ବହୁବାର ବାଜିବା ପରେ ଅବଶେଷରେ ମିସେସ୍ ହଲ୍ ଥାଳରେ ପ୍ରାତଃଭୋଜନ ନେଇ ବାହାରିଲେ । ପ୍ରାତଃଭୋଜନ ଉପରେ ଢଙ୍କା ଯାଇଛି ଖଣ୍ଡିଏ କାଗଜ । ତାହା ହେଉଛି ଅତିଥି-ଙ୍କର ବକେୟା ବିଲ୍ ।

"ଓଃ, ଆପଣ-ବାକି ଶୁଝିଦେବାପାଇଁ ଏତେ ବ୍ୟସ୍ତ ତାହା ମୁଁ ବୁଝି ପାରି ନ ଥିଲି ।"—ଏହା କହୁ କହୁ କୋଠରି ଭିତରକୁ ପଶିଗଲେ ମିସେସ୍ ହଲ । ପଶିଯାଇ କହିଲେ, "ଏଇ, ନଅନ୍ତୁ ବିଲ୍..."

ଅତିଥି ଦରଜା ଖୋଲିଦେଇ କୋଠରି ମଝିରେ ଛିଡ଼ାହୋଇ-ଥିଲି ଅର୍ଦ୍ଧ ଅନ୍ଧକାରରେ । ସେ ରାଗିଉଠିଲି ଏହି ଅଭିନବ ସମ୍ଭାଷଣ ଶୁଣି—"ବାକି ଶୁଝିବା ପାଇଁ ନୁହେଁ; ମୁଁ ବ୍ୟସ୍ତ ହେଉଥିଲି ପ୍ରାତଃ ଭୋଜନ ପାଇଁ । ପ୍ରାତଃଭୋଜନର ସମୟ ବିତିଯାଇ ତିନିଘଣ୍ଟା ଡେରି ହୋଇଗଲିଣି ।"

ମିସେସ୍ ହଲ୍ ତୀକ୍ଷ୍ଣ ସ୍ୱରରେ ଉତ୍ତର ଦେଲେ, "ଆଜି ଖାଇବାଖର୍ଚ୍ଚ ଓ ଭଡ଼ା ଦେବାର ଦିନ ବିତି ଯାଇ ପାଞ୍ଚଦିନ ହେଲିଣି—"

"ମୁଁ ତ ତୁମକୁ କହିଥିଲି ଯେ ବାକି ଶୁଝିବାରେ ଟିକିଏ ଡେରିହେବ । ଯାହା ଡେରି ହେଲିଣି ତ ହେଲିଣି, ତେବେ ବର୍ତ୍ତମାନ ମୁଁ ସମୁଦାୟ ବାକି ଶୁଝିଦେବି । ଖାଇସାରି ଦେବି ନା ଖାଇବା ଆଗରୁ ଦେବି ?"

ମିସେସ୍ ହଲ୍ ବ୍ୟଙ୍ଗ ସ୍ୱରରେ କହିଲେ—ବର୍ତ୍ତମାନ ଶୁଝି ଦେବେ ? କିପରି ଶୁଝିଦେବେ ? ତାହେଲେ ଆପଣ ପାଖରେ ଟଙ୍କା ରଖି ଅକାରଣରେ ଜାଣିଶୁଣି ହୋଟେଲବାଲୀଟାକୁ ହଇରାଣ କରୁଥିଲେ—ନୁହେଁ ?"

"ମୋ କଥା ବିଶ୍ୱାସ କର—କାଲି ପର୍ଯ୍ୟନ୍ତ ମୋ ପକେଟରେ ପାହୁଲାଏ ମଧ୍ୟ ନଥିଲା ।"

"କାଲି ନଥିଲା—ତେବେ ଆଜ ଆସିଲା କୁଆଡୁ ?"

ଅନେକ ଦୂରରେ ଛିଡ଼ା ହୋଇ କେହି ଜଣେ ଦେଖଣାହାରି ବ୍ୟକ୍ତି କହିଉଠିଲେ, "ପାଦ୍ରୀ ବାନଟିଂଙ୍କ ଟେବୁଲ ଉପରୁ ଆସିଛି ବୋଧହୁଏ !"

ଅତିଥି ଏହା ଶୁଣି କ୍ରୋଧରେ ଗର୍ଜନ କରି କହିଲା, "ମୋ ସହିତ ଏପରି କଥାବାର୍ତ୍ତା କରିବା ସାହସ ତୁମର ଅଛି ? ମୁଁ କିଏ, ମୁଁ ତୁମମାନଙ୍କର କ'ଣ କ୍ଷତି କରିପାରେ ଜାଣ ? ଯଦି ନଜାଣିଥାଅ ତେବେ ଜଣାଇଦେବି ଏହିକ୍ଷଣି ।"

ଏହା କହି ସାରିବା ସଙ୍ଗେ ସଙ୍ଗେ ଅତିଥି ତା ମୁହଁରେ ହାତର ପାପୁଲିଟା ବୁଲାଇ ଦେଲା । କି ଆଶ୍ଚର୍ଯ୍ୟ ! ସଙ୍ଗେ ସଙ୍ଗେ ତା ମୁହଁଟା ଚାଲିଗଲା କେଉଁଆଡ଼େ । ମୁହଁ ବଦଳରେ ଦେଖାଗଲା ଗୋଟିଏ କଳା ଗହ୍ୱର ।"ଏଇ ନିଅ" !—କହି ଲୋକଟା ଗୋଟିଏ ପାଦ ଆଗେଇଗଲା ଏବଂ ମିସେସ୍ ହଲ୍‌ଙ୍କ ହାତରେ କଣ ଗୋଟାଏ ଗୁଞ୍ଜିଦେଲା । ଜିନିଷଟା ହେଲା ଗୋଟିଏ ନାକ । ଅତିଥିର ମୁହଁରେ ପଡ଼ି ବ୍ୟକ୍ତିତ ଯେଉଁ ଗୋଟିକ ବସ୍ତୁ ଥିଲା ସର୍ବସାଧାରଣ ସମ୍ମୁଖରେ ଦୃଶ୍ୟମାନ, ସେହି ଗୋଲପି ସମୁନ୍ନତ ନାସିକାଟି ।

ନାକ ବିସର୍ଜନ କରିଦେଇ ଚଷମା ଖୋଲିଲା ସେ । ଉପସ୍ଥିତ ସମସ୍ତେ ଭୟ ଏବଂ ଉତ୍ତେଜନାରେ କମ୍ପିଉଠିଲେ । ଚଷମା ପରେ ଲୋକଟା ଖୋଲିଲା ଟୋପି । ତାପରେ ସଜୋରରେ ଟାଣି ଛିଣ୍ଡାଇ ଦେଲା ତା ଗାଲରେ ଲଗିଥିବା କୃତ୍ରିମ ବାଳ ଏବଂ କପାଳର ପଟି । ଲୋକଗୁଡ଼ାକ ସଙ୍ଗେ ସଙ୍ଗେ ଚିତ୍କାର କଲେ, "ଭଗବାନ, ରକ୍ଷାକର !"

ବର୍ତ୍ତମାନ ଯେଉଁ ଜିନଷ ସମସ୍ତଙ୍କ ଚକ୍ଷୁରେ ପଡ଼ିଲା ସେପରି ବଖୁଷିକା କେହି କେବେ ଦେଖିନ କି ଦେଖିବା କଥା ସ୍ୱପ୍ନରେ ମଧ୍ୟ ଭାବିନ । ମିସେସ୍ ହଲ୍ ଚିତ୍କାର କରି କରି ସଦର ଦରଜା ଆଡ଼େ ଦୌଡ଼ିବାକୁ ଲାଗିଲେ, ଉଦ୍ଦେଶ୍ୟ କପରି ପଳାଇଯାଇ ପ୍ରାଣ ବଞ୍ଚାଇବେ । ତାଙ୍କୁ ଦେଖି ସମସ୍ତେ ପଡ଼ିଉଠି ଦୌଡ଼ିଲେ ଦରଜା ଆଡ଼କୁ ।

ଏକମାତ୍ର ଲୋକ ଯେ କି ଛିଡ଼ା ହୋଇ ରହିଲା ସେଠାରେ, ଛିଡ଼ାହୋଇ ହାତଗୋଡ଼ ହଲାଇ ଗାଳିଗୁଲଜ କରି ଭୟ ପ୍ରଦର୍ଶନ କରିବାକୁ ଲାଗିଲା ସମସ୍ତଙ୍କୁ, ସେ ହେଲା ଗୋଟିଏ କବନ୍ଧ । ପାଦଠାରୁ ଗଳା ପର୍ଯ୍ୟନ୍ତ ସବୁ ଅଙ୍ଗ ଅଛି ତାର ଯଥାଯଥ । କୋଟ୍‌ର କଲର ପର୍ଯ୍ୟନ୍ତ ସବୁ ଠିକ୍, କିନ୍ତୁ ତା ଉପରେ ? କିଛି ନାହିଁ ତା ଉପରେ । ଫାଙ୍କା···ଶୂନ୍ୟ ।

ମିସେସ୍ ହଲ ଦୌଡ଼ି ପଳାଇବା ବେଳେ ପଡ଼ି ଆହତ ହୋଇଛନ୍ତି । ତାଙ୍କୁ ଘେରି ଠିଆହୋଇ ବହୁ ଲୋକ ଭୂତ ବିଷୟରେ ଆଲୋଚନା କରୁଛନ୍ତି । ଏତିକିବେଳେ ସେଠାରେ ପହଞ୍ଚିଲେ ମିଷ୍ଟର ହଲ । ତାଙ୍କର ଚକ୍ଷୁ ରକ୍ତପରି ଲାଲ ଜଣାଯାଉଛି । ତାଙ୍କର କ୍ରୋଧ ସୀମା ଡେଇଁ ଯାଇଛି । ତାଙ୍କ ପଛରେ ସ୍ୱୟଂ ଜ୍ୟାଫାର୍ସ, ସେହି ଗାଁର କନେଷ୍ଟବଳ । କନେଷ୍ଟବଳ ପଛରେ ସେହି ଅପରାଜେୟ ଗୁଣିଆ ଓ୍ୱେଜାର୍ସ ।

ସେମାନେ ଆସିଛନ୍ତି ଖଣ୍ଡିଏ ଓ୍ୱାରେଣ୍ଟ ଏଥର । ଆଗରୁ ଯେଉଁମାନେ ସେଠାରେ ଅଛନ୍ତି ସେମାନଙ୍କ ଦାୟିତ୍ୱ ହେଲା ଆଗନ୍ତୁକମାନଙ୍କୁ ସେହି ଭୂତ ସମ୍ବନ୍ଧେ ସବୁକଥା ଜଣାଇ ଦେବା । "ମୁଣ୍ଡ ନାହିଁ"—ଏହି ଖବର ସବୁଠାରୁ ଜୋର ଗଳାରେ ପ୍ରଚାରିତ ହେବାକୁ ଲାଗିଲା ସେମାନଙ୍କ ତରଫରୁ ।

"ମୁଣ୍ଡ ଥାଉ ବା ନଥାଉ—" ବଡ଼ ପାଟିରେ କହିଲା କନେଷ୍ଟବଲ ଜ୍ୟାଫର୍ସ—"ମୋର କାମ ହେଲା ତାକୁ ଗିରଫ କରିବା । ତାହା ମୁଁ କରିବି ନିଶ୍ଚୟ ।"

ମିଷ୍ଟର ହଲ୍ ଚାଲିଗଲେ ସେ ଅଜବ ଲୋକଟିର ବିଶ୍ରାମ କକ୍ଷ ଆଡ଼କୁ । ସେହି କକ୍ଷର ଦରଜାଟା ଖୋଲିଦେଲେ ସଶବ୍ଦରେ । କହିଲେ "କନେଷ୍ଟବଲ, ତୁମର କାର୍ଯ୍ୟ ତୁମେ କର ଏଥର ।" ସମସ୍ତେ ଦେଖିବାକୁ ପାଇଲେ ଘରର ଏକ ଅନ୍ଧକାର କୋଣରେ ଗୋଟିଏ ମୁଣ୍ଡହୀନ ମୂର୍ତ୍ତି । ଦସ୍ତାନାପିନ୍ଧା ଗୋଟିଏ ହାତରେ ତାର ଥିଲା ଅଧ ଖିଆ ଖଣ୍ଡିଏ ରୁଟି ଏବଂ ଅନ୍ୟ ହାତରେ ଥିଲା ପନିରର ଖଣ୍ଡେ ।

"ହେଇଟି, ହେଇଟି, ଛୁଡ଼ା ହୋଇଛି ଭୂତଟା"—କହିଲେ ହଲ୍ ।

ମୂର୍ତ୍ତିଟାର କୋଟ୍ କଲରର ଉପରଭାଗରୁ ଏକ ପ୍ରଶ୍ନ ଶୁଣାଗଲା —"ଏସବୁର ଅର୍ଥ କ'ଣ ? ଆଉ ବେଶି ଗୋଳମାଳ ନ କରି ଏଠାରୁ ଚାଲିଯାଅ—ନଚେତ୍ ଦେଖିବ ।"

ଉତ୍ତର ଦେବାର ଦାୟିତ୍ୱ ବର୍ତ୍ତମାନ ଜ୍ୟାଫାର୍ସର, କାରଣ ସେ ହେଉଛି ଆଇନ ଶୃଙ୍ଖଳା ରକ୍ଷା କରିବାର ଭାରପ୍ରାପ୍ତ ସରକାରୀ କର୍ମଚାରୀ । ନିଜର ଦାୟିତ୍ୱ ସମ୍ବନ୍ଧରେ ସେ ପୂର୍ଣ୍ଣ ସଚେତନ । "ତୁମେ ତ ବାବୁ ବେଶ୍ ମଜାର ଲୋକ" - କହିଲା ସେ ଗୋଟିଏ କୃତ୍ରିମ ପୂର୍ଣ୍ଣ ହସି ହସିଦେଇ । "କିନ୍ତୁ ମୁଣ୍ଡ ଥାଉ ବା ନଥାଉ ତାହା ମୋର ଦେଖିବା ଦରକାର ନାହିଁ । ୱାରେଣ୍ଟ ଅନୁଯାୟୀ ସଶରୀରରେ ତୁମକୁ ଧରି ନେଇ ଯିବାକୁ ହେବ । ମୁଣ୍ଡ ଥାଉ ବା ନଥାଉ ଶରୀରଟା ତ ଅଛି ! ବର୍ତ୍ତମାନ ମୋର କର୍ତ୍ତବ୍ୟ ମୁଁ କରିବି ।"

ପାଦେ ଆଗକୁ ଘୁଞ୍ଚିଯାଇ ଅତିଥି ଚିତ୍କାର କଲା—"ଖବରଦାର ।"

କନେଷ୍ଟବଲ କହିଲା—"ତୁମକୁ ଗିରଫ କଲି ।" ଏହା କହିବାମାତ୍ର ସଙ୍ଗେ ସଙ୍ଗେ ସେ ଧରିପକାଇଲା ଲୋକଟାର ଗୋଟିଏ ହାତକୁ । ସେଲୋକଟା କ'ଣ କମ ଜନ୍ତୁ ? ସେ ତା ବାଁ ହାତର ଦସ୍ତାନା ଖୋଲି କଷିଦେଲା ଜ୍ୟାଫର୍ସ ଗାଲରେ ଗୋଟିଏ ଚାପୁଡ଼ା । କିନ୍ତୁ ଜ୍ୟାଫର୍ସ ମଧ୍ୟ କମ୍ ନୁହେଁ । ସେ ପୁଲିସ ଲୋକ । ସେହି ବଳା-ଗଣ୍ଠିଠାକୁ ଜୋର୍‌ରେ ଚାପି ଧରିଲା ଜ୍ୟାଫର୍ସ, ଆଉ ଅନ୍ୟ ହାତରେ ମାଡ଼ଦେବାକୁ ଲାଗିଲା କୋଟର କଲରଉପରେ । ଅଦୃଶ୍ୟ ଲୋକଟା ଚାଲି କୁଆଡ଼େ ? ଏହିର ସମୟରେ ଗୋଟାଏ ପ୍ରଚଣ୍ଡ ମୁଥ ଆସି ବାଜିଲା ତାର ତଳପେଟ ଉପରେ । ସେ 'ମରିଗଲି' 'ମରିଗଲି' ବୋଲି ଚିତ୍କାର କରି କରି ଖୁବ୍ ଜୋର୍‌ରେ ଭିଡ଼ିଧରିଲା ଅଦୃଶ୍ୟ ଆସାମୀର ହାତ ଏବଂ ବେକ ।

ଛୁରୀ ଖଣ୍ଡିଏ ଥିଲା ହଲ୍‌ଙ୍କ ହାତରେ । ସେଇଟା ସେ ପଛରୁ ଓ୍ୱେଜାର୍ସ‌ର ହାତକୁ ବଢ଼ାଇଦେଲେ । ଉଦ୍ଦେଶ୍ୟ ଛୁରୀ ଖଣ୍ଡିକ ଯେପରି ଆସାମୀ ହାତରେ ନ ପଡ଼େ । ତା ପରେ ହଲ ଆଗେଇଲେ ଜ୍ୟାଫର୍ସଙ୍କୁ ସାହାଯ୍ୟ କରିବା ପାଇଁ । ଜ୍ୟାଫର୍ସ ଏବଂ ଅତିଥି ମଧ୍ୟରେ ଧସ୍ତାଧସ୍ତି ଲାଗିଛି ସେତେବେଳକୁ । ଏହି ଧସ୍ତାଧସ୍ତି ଫଳରେ ଉଭୟେ ବୁଲିବାରେ ଲାଗିଛନ୍ତି ଘରଟା ସାରା । ହଠାତ୍ କଡ଼ଡ଼ା ଖାଇ ତଳେ ପଡ଼ିଲା ଦୁଇଟିଦେହ-ଗୋଟିଏ ପୂର୍ଣ୍ଣାଙ୍ଗ, ଅନ୍ୟଟି ମୁଣ୍ଡହୀନ । ମୁଣ୍ଡହୀନ ଦେହଟି ଉଠିଛି ମୁଣ୍ଡଥିବା ଦେହ ଉପରେ । ଏହା ଦେଖି ହଲ୍ ଏବଂ ଓ୍ୱେଜାର୍ସଙ୍କ ବୁଦ୍ଧି ହଜିଗଲା । କିନ୍ତୁ କରିବେ କ'ଣ ? ଦୁର୍ଦ୍ଦାନ୍ତ ପୁଲିସ କନେଷ୍ଟବଲଟା ତଳେ ପଡ଼ିଗଲା—କି ଆଶ୍ଚର୍ଯ୍ୟ ? ପୁଲିସ ଯାହା ପାରିଲା ନାହିଁ ଆଉ ପାରିବ କିଏ ? ଓ୍ୱେଜାର୍ସର ହାତରେ ଛୁରୀ, ସେ ସେଇଟି ସମ୍ଭାଳି ବାରେ ବ୍ୟସ୍ତ । ତାର ଭୟ, ସେହି ମୁଣ୍ଡହୀନ ଲୋକଟା ହାତରେ

ଛୁଞ୍ଚି ପଡ଼ଗଲେ ଆଉ ରକ୍ଷା ନାହିଁ । କାକୁଡ଼ି କାଟିଲା ପରି ସମସ୍ତଙ୍କୁ କାଟିଦେବ ଖଣ୍ଡା ଦ୍ୱିଧାରେ । ତାପରେ ହଠାତ୍ ଶୁଣାଗଲା ଘରର ଚଟାଣରେ ବୋତଲ ପଡ଼ିବାର ଶବ୍ଦ ଏବଂ ପରେପରେ ଘରଟି ସାଂଘାତିକ ଉତ୍କଟ ଗନ୍ଧରେ ।

ଏଣେ ଚିତ୍କାର କଲା ଅଟଥି—"ହାର ମାନନ୍ତୁ, ହାର ମାନନ୍ତୁ ।"

କାହିଁକି ହାର ମାନିଲା ତାହା ଜଣାଗଲା ନାହିଁ । ଯାହାହେଉ, ସେ ଏହା କହିସାରିବା ପରେ ଧଇଁ ସଇଁ ହୋଇ ଉଠିଲା ଜ୍ୟାଫର୍ସ ଉପରୁ । ତା ଚାଲିଚଳଣିରୁ ସ୍ପଷ୍ଟ ଜଣାଯାଉଥିଲା ଯେ ସେ ଖୁବ୍ ହରବର ହୋଇଛନ୍ତି । ନିଃଶ୍ୱାସ ନେଉଛନ୍ତି ଘୃଣା କାନ୍ଦଣା ପରି । ତାପରେ ଜ୍ୟାଫାର୍ସ ଛୁଡ଼ାହୋଇ ବାହାରକଲା ହାତକଡ଼ି । ବାହାରକଲା ସତ, କିନ୍ତୁ ମନକୁ ମନ କହିଲା, "ହାତ ନାହିଁ ଯାହାର ତାକୁ ହାତକଡ଼ି କିପରି ପିନ୍ଧାଇବ ?"

ଲୋକଟା ସେତେବେଳକୁ ଓଭରକୋଟ୍‌ର ବୋତାମଗୁଡ଼ିକ ନିଃଶବ୍ଦରେ ଖୋଲି ଦେଇ ସାରିଲାଣି । "ପାଦଟା ଘାଙ୍କିଯାଉଛି ବୋଧହୁଏ"—ଏହା କହି ସେ ପାଦ ପରୀକ୍ଷା କରିବା ଉଦ୍ଦେଶ୍ୟରେ ଧୀରେ ଧୀରେ ଚାଲିବାକୁ ଲଗିଲା । ଚାଲୁଚାଲୁ ଜୋତା ଓ ମୋଜା ଖୋଲିବାକୁ ଚେଷ୍ଟା କରିବାକୁ ଲଗିଲା ।

ହଠାତ୍ ଶୁଣାଗଲା—'ଆରେ, ଏଇଟା ମନୁଷ୍ୟ ନୁହେଁ ବୋଧହୁଏ—ଖାଲି ପୋଷାକର ଗଦା । ପୋଷାକ ଭିତରେ କେହି କିଛି ନାହିଁ ।" ଏଣେ ଶୂନ୍ୟରୁ ଭୂତ କହିବା ଶୁଣାଗଲା—"କଥାଟା କ'ଣ ଜାଣ, ମୋର ହାତ, ପାଦ ତଥା ସାରା ଦେହଟା ଅଛି, ତଥାପି ମୁଁ ଅଦୃଶ୍ୟ । ମୁଁ ଅଦୃଶ୍ୟ ହେବାର କାରଣ କ'ଣ ଜାଣ—ଲୋକଙ୍କ ମନରେ ଆନନ୍ଦ ଦେବାପାଇଁ । ଲୋକେ ମୋତେ ସବୁ ଭୁଲିବୁଝିବେ

ତେବେ ମୁଁ ଜାଣୁନ । ତୁମେ କହିପାର ଯେ ମନୁଷ୍ୟ କେବେହେଲେ ଅଦୃଶ୍ୟ ହୁଏନାହିଁ – ମୁଁ ମନୁଷ୍ୟ, ମୁଁ କପରି ଅଦୃଶ୍ୟ ହେବି ! ଅଦୃଶ୍ୟ ହେବାଟା ଖୁବ୍ ଆଶ୍ଚର୍ଯ୍ୟର କଥା—କିନ୍ତୁ ତାହା ତ ବେଆଇନ ନୁହେଁ ? ତେବେ ତୁମେମାନେ ପୁଲିସ ନେଇ ମୋତେ ହାତକଡ଼ି ପିନ୍ଧାଇବାକୁ ଆସିଲ ମୋର କି ଅପରାଧ ଯୋଗୁ ?"

ଜ୍ୟାଫର୍ସ ଉତ୍ତର ଦେଲା—"ତୁମ ନାମରେ ଏହି ଗିରଫଦାରି ୱାରେଣ୍ଟ ଅଛି । ଅନ୍ୟ ଘରେ ପଶି ଚୋରି କରିଛ—ଏହା ହେଲା ତୁମର ଅପରାଧ ।"

"ତୁମେ ଯଦି ଚାହଁ ତୁମ ସାଙ୍ଗରେ ମୁଁ ଯାଇପାରେ—କିନ୍ତୁ ହାତକଡ଼ି କେବେଁ ପିନ୍ଧିବି ନାହିଁ, ଯାହା ହେଲେ ମଧ୍ୟ ।"—କହିଲା ଅଦୃଶ୍ୟମାନବ ।

"ନିୟମ ଯେ..."

'ତୁମ ନିୟମଫିୟମ ରଖ ହେ, ହାତକଡ଼ି ପିନ୍ଧିବିନି କେବେଁ ।'

"କ୍ଷମାକରିବେ—ମୋର କର୍ତ୍ତବ୍ୟ ମୁଁ ନିଶ୍ଚୟ କରିବି ।" ଏହା କହି ଜାଫର୍ସ ଆଗେଇଗଲା ତା ଆଡ଼କୁ । ଅଦୃଶ୍ୟ ମାନବଟା ହଠାତ୍ ବସିପଡ଼ିଲା ସେହି ଘର ମଝିରେ । ସେ 'କ'ଣ କରିବ ତାହାର କୌଣସି ସଙ୍କେତ କେହି ପାଇବା ପୂର୍ବରୁ ସେ ଜୋତା ମୋଜା, ଏପରିକି ପେଣ୍ଟଲୁନ ପର୍ଯ୍ୟନ୍ତ ଫୋପାଡ଼ଦେଇ ଛିଡ଼ାହୋଇଗଲା । ସଙ୍ଗେ ସଙ୍ଗେ ଫିଙ୍ଗିଦେଲା ଓଭରକୋଟ୍ ମଧ୍ୟ ।

"ରହ ରହ"—ଚିତ୍କାର କରିଉଠିଲା ଜ୍ୟାଫର୍ସ । କ'ଣ ଯେ ଥିଲା ଉଦ୍ଦେଶ୍ୟ ଏହି ଅଦୃଶ୍ୟ ଆସାମୀର, ବର୍ତ୍ତମାନ ତା'ର ସଙ୍କେତ ପାଇଲା ଜ୍ୟାଫର୍ସ । ସେ ଖୁବ୍ ଜୋରରେ ଭିଡ଼ିଧରିଛି ଆସାମୀର ଓୟେଷ୍ଟ କୋଟ୍ଟା । ତାପରେ ଚାଲିଲା ଧସ୍ତାଧସ୍ତି ଉଭୟଙ୍କ ଭିତରେ କେତେ ସେକେଣ୍ଡ ପର୍ଯ୍ୟନ୍ତ । ତାପରେ ଓୟେଷ୍ଟ କୋଟ୍ଟା

ଖସିଆସି ରହିଲା ଜ୍ୟାଫର୍ସର ହାତରେ; କିନ୍ତୁ ତା ଭିତରେ ଥିବା ସାର୍ଟଟା ଚାଲିଆସିଲା ବାହାରକୁ । ଜ୍ୟାଫାର୍ସ ଚିତ୍କାର କଲା, "ଧର, ଧର ଲୋକଟାକୁ । ନୋହିଲେ ସେ ପଳେଇଯିବ । ଜଲ୍ଦି ଆସ !"

ସମସ୍ତେ ସମସ୍ୱରରେ ଚିତ୍କାର କଲେ—"ଧର, ଧର, ବଦ୍‌ମାସ ପଳେଇଯିବ ।" ସମସ୍ତେ ଏକ ସାଙ୍ଗରେ ଦୌଡ଼ିଲେ ସାର୍ଟଟାକୁ ଧରିବାପାଇଁ । ଅଦୃଶ୍ୟ ମାନବର ସବୁ ଚିହ୍ନ ଲୁପ୍ତ ହୋଇଯାଇଛି —ଦୃଶ୍ୟମାନ ବର୍ତ୍ତମାନ କେବଳ ଉଡ଼ୁଥିବା ସାର୍ଟଟା । ସାର୍ଟର ହାତଟା ହଠାତ୍ ଜୋରରେ ଗୋଟିଏ ଘୁଷି ମାରିଲା ହଲଙ୍କ ମୁହଁ ଉପରେ । ହାତ ବଢେଇ ଧରିବାକୁ ଯାଉଥିଲେ ହଲ୍—ଘୁଷିଖାଇ ପଡ଼ିଗଲେ ତଳେ । ସେତେବେଳକୁ ସାର୍ଟଟା ଦେହରୁ ଖସିଆସି ହାତ ଉପରେ ରହିଲାଣି ଅଦୃଶ୍ୟ ମାନବର । ଜ୍ୟାଫାର୍ସ ଏହି ସାର୍ଟଟି ଭିଡ଼ି ଧରିଲା ପ୍ରାଣପଣ । ତାର ଫଳ ଏହା ହେଲା ଯେ, ସାର୍ଟଟା ଏକଦମ୍ ଖସି ଆସିଲା ଅଦୃଶ୍ୟ ମାନବ ଦେହରୁ । ଏତିକିବେଳେ ଶୂନ୍ୟରୁ ଗୋଟାଏ ଶକ୍ତ ବିଧା ଆସି ବାଜିଗଲା ଜ୍ୟାଫାର୍ସର ନାକ ଉପରେ । ସେ ବ୍ୟଥାରେ ଅଧିର ହୋଇ ତଳେ ମୁହଁ ମାଡ଼ି ପଡ଼ିଗଲା । ତାପରେ ଆଉ କେତେକଙ୍କ ଗାଲରେ ବସିଲା ଶକ୍ତ ଗୁପ୍ପୁଡ଼ାମାନ ।

ସାବଧାନ ! ସାବଧାନ ! —ସମସ୍ତେ ସମସ୍ୱରରେ କହୁଛନ୍ତି । 'ସାବଧାନ ! ଯେପରି ପଳାଇ ନ ଯାଏ । ତାକୁ ଧରିପକାଅ । ଦରଜାଟା ବନ୍ଦ କରିଦିଅ । ଛାଡ଼ ନାହିଁ । ହେଇ ଆସିଲା, ହେଇ ଆସିଲା, ଧରିପକାଅ ।" ଏହି ହୋହା ଚିତ୍କାର ମଧ୍ୟରେ ବର୍ଷା ହେଲା ଘୁଷି, ଗୁପ୍ପୁଡ଼ା, ବିଧା ଇତ୍ୟାଦି । ଭିଡ଼ଭିତରେ କେହି ଜଣେ ନଥିଲା, ଯାହା ଉପରେ କି ଏଗୁଡ଼ିକର ସ୍ପର୍ଶ ନ ଲାଗିଛି । ଗୁଣିଆ ଓସ୍ୱେଜାର୍ସ ପାଇଲା ଗୋଟିଏ ବିଧା ଯାହାକି ସବୁଠାରୁ ଓଜନିଆ ଥିଲା । ସେ ଅସମ୍ଭାଳ ହୋଇ ଦୌଡ଼ି ପଳାଇଲା ଘର ବେଗରେ ।

ଓୟେ୍ନଜାସ ଦେଖାଦେଖି ଅନ୍ୟ ସମସ୍ତେ ଏକ ସଙ୍ଗରେ ଅଗ୍ରସର ହେଲେ ଦରଜା ଆଡ଼କୁ । ଫଳରେ ଗୋଟିଏ ସ୍ଥାନରେ ଭିଡ଼ ଜମିଗଲା । ତାପରେ ଚାଲିଲା ମହାମାର ଠେଲାପେଲା । କାହାର ଦାନ୍ତ ଭାଙ୍ଗିଲା ତ କାହାର କାନର ଅଧେ ଛିଣ୍ଡି ଝୁଲିଲା । ଜ୍ୟାଫର୍ସ ଚକ୍ଷୁ ବୁଲି ଦେଖିଲେ ଅଧମିଟର ଦୂରରେ କେହି ଜଣେ ଠିଆହୋଇଛି । ଅସ୍ପଷ୍ଟ ଭାବରେ ଦେଖାଯାଉଛି କେବଳ ତାର ଗ୍ଲୋଭଟା । ଜ୍ୟାଫାର୍ସ ଉଡ଼ିଧରିଲେ ସେହି ଗ୍ଲୋଭଟାକୁ ଖୁବ୍ ଜୋର୍‌ରେ ଯଦିଓ ତାହା ପ୍ରାୟ ଅଦୃଶ୍ୟ ଥିଲା । ତାପରେ କୁସ୍ତି ଚାଲିଲା ଜାଫାର୍ସ ଏବଂ ତାର ସେହି ଅଦୃଶ୍ୟ ଶତ୍ରୁ ମଧ୍ୟରେ । ଜ୍ୟାଫାର୍ସର ମୁହଁ ହୋଇଗଲା ବଲ୍‌ବୁଲ୍ ରକ୍ତବର୍ଣ୍ଣ । ତାର ହାତର ଶିରାଗୁଡ଼ାକ ଏତେ ଜୋର୍‌ରେ ଫୁଲିଗଲା ଯେ ସେଗୁଡ଼ିକ ଫାଟିଯିବ ବୋଲି ଜଣାଗଲା । ତାପରେ ସେ ଅଚେତ ହୋଇ ତଳେ ପଡ଼ିଗଲେ ।

ଧର ! ଧର ! ଉଡ଼ିଧର ଉଡ଼ିଧର—ବହୁ କଣ୍ଠରେ ମହା-କୋଳାହଳ । କେତେକ ଯୁବକ ରାସ୍ତାରୁ ଦୌଡ଼ିଆସିଲେ ପଳାୟ-ମାନ ଅଦୃଶ୍ୟ ମାନବକୁ ଧରିବାପାଇଁ । ତାକୁ ଧରିବାକୁ ଗଲାବେଳେ ସେମାନଙ୍କ କାନ ଓ ପିଠିରେ ବାଜିଲା ଘୁଷି, ବିଧା, ଚାପୁଡ଼ା ଇତ୍ୟାଦି । ତଳେ ପଡ଼ିଲେ ସେମାନେ; କନେଷ୍ଟବଲ ହଲର ଅଚେତନ ଦେହ ଉପରେ ।

ହୋଟେଲଠାରୁ ଅଳ୍ପ ଦୂରରେ ରାସ୍ତା ଉପରେ ଯାଉଥିଲା ଜଣେ ମହିଳା । ହୋଟେଲ ଭିତରେ କୋଳାହଳ ଶୁଣି ଗୋଟିଏ ସେକେଣ୍ଡ ଠିଆହୋଇଗଲା କୋଳାହଳର କାରଣଟା ଜାଣିବାପାଇଁ । ସେ ହଠାତ୍ ଖାଇଲା ଗୋଟିଏ ପ୍ରଚଣ୍ଡ ଧକ୍କା । ତା ପାଖ ଦେଇ କିଏ ଯେପରି ଚାଲିଗଲା ଝଡ଼ ବେଗରେ । କିଏ ଗଲା ? କିଏ ଗଲା ?

କାହାକୁ ଦେଖିବାକୁ ନ ପାଇ ସେ ବଭୃସ ଚିତ୍କାର କରିବାକୁ ଲାଗିଲା ପାଗଳୀ ପରି ।

ଗୋଟିଏ କୁକୁର ଆସୁଥିଲା ହୋଟେଲଆଡ଼କୁ—ଫୋପଡ଼ା ଯାଇଥିବା ମାଂସ ହାଡ଼ ଖାଇବାପାଇଁ । ସେ ଭୁକିବା କ୍ଷଣି ତା ପେଟରେ ବସିଲା ଗୋଟିଏ ଶକ୍ତ ଲାତ । ସେ କ୍ୟାଉଁ କ୍ୟାଉଁ ଶବ୍ଦ କରି ପଶିଗଲା ଗୋଟିଏ ପାଇଖାନା ଭିତରେ ।

ଅଦୃଶ୍ୟ ମାନବର ପତ୍ତା ପାଇଲେନି କେହି । ସେ ପଳାଇ ଗଲାଣି । ତଥାପି ଜନତା କିଛି ସମୟ ଠିଆ ହୋଇ ରହିଲେ ହୋଟେଲ୍ ସାମନାରେ । ସମସ୍ତଙ୍କ ମନରେ ବିସ୍ମୟ, ସମସ୍ତଙ୍କ ମନରେ ଆତଙ୍କ । କ୍ରମେ କ୍ରମେ ଭିଡ଼ କମିବାକୁ ଲାଗିଲା । ସମସ୍ତେ ଚାଲିଗଲେ ଯେଝା ରାସ୍ତାରେ—କେବଳ ପଡ଼ିରହିଲା କନେଷ୍ଟବଲ ଜ୍ୟାଫାର୍ସର ମୃତ ଦେହ ହୋଟେଲ ସାମନାରେ ।

## ଛଅ

ସେଦିନର ଅପରବେଳା । ଟମାସ୍ ମାରଭେଲ୍ ନାମରେ ଜଣେ ଭିକାରି ଆଇପିଂର ଅନତି ଦୂରରେ ଥିବା ଗୋଟିଏ ନିର୍ଜନ ଜଙ୍ଗଲରେ ବସିଥିଲା । ସନ୍ଧ୍ୟା ହୋଇ ଆସିଲାଣି । ବର୍ତ୍ତମାନ ରାତିର ଆଶ୍ରୟ ନେବା ପାଇଁ କୌଣସି ଜାଗା ଖୋଜିବା ଦରକାର । ସେ ଉଠିବାର ଉପକ୍ରମ କଲା । ଏତିକିବେଳେ ହଠାତ୍ ପେଛରୁ ତାକୁ କିଏ କହିଲା—"କଣ ଚାଲିଯିବ ?"

ମାରଭେଲ ବେଶ୍ ଭଲଭାବରେ ଚତୁର୍ଦ୍ଦିଗକୁ ଚାହିଁ ଦେଖିଲା; କିନ୍ତୁ କାହାରିକୁ ଦେଖିବାକୁ ପାଇଲା ନାହିଁ । ତାପରେ ସେ ପଚାରିଲା, "କିଏ ? କିଏ କହୁଛ ?"

"ମୁଁ ।"

"ମୁଁ ? କେଉଁଠି ଅଛ ତୁମେ ?"

ମାର୍‌ଭେଲ ଦୁଇ ଆଖି ରଗଡ଼ି କହିଲା, "ଯଦି ତୁମେ ମୋ ସାମନାରେ ଅଛ ତାହାହେଲେ ମୁଁ ତୁମକୁ ଦେଖି ପାରୁନାହିଁ କାହିଁକି ?"

"ମୁଁ ଯେ ଅଦୃଶ୍ୟ ।"

"ଏଁ ଅଦୃଶ୍ୟ ? ଧେତ୍ ମିଛ କଥା ।"

"ବିଲ୍‌କୁଲ୍ ସତକଥା । ପ୍ରମାଣ ଚାହଁ ? ଏଇ ଦେଖ—ମୁଁ ତୁମକୁ ଢେଲା ମାରିଲି ।"

ସଙ୍ଗେ ସଙ୍ଗେ ଗୋଟିଏ ଢେଲା ଆସି ମାରଭେଲ ଦେହରେ ବାଜିଲା । ମାର୍‌ଭେଲ ଲକ୍ଷ୍ୟକଲା ରାସ୍ତାରୁ ଗୋଟିଏ ଢେଲା ତା ମନକୁ ଶୂନ୍ୟରେ ଉଡ଼ି ଆସି ବାଜିଲା ତା ଦେହରେ । ଅଦୃଶ୍ୟ ମାନବ କହିଲା, "ଆଉ ପ୍ରମାଣ ଦରକାର ?"

ମାରଭେଲ ଭୟରେ କହିଲା—"ନାଁ, ନାଁ, ଆଉ ପ୍ରମାଣ ଦରକାର ନାହିଁ, ଯଥେଷ୍ଟ ପ୍ରମାଣ ମିଳିଗଲାଣି ।" ସାହସ ବାନ୍ଧି ମାରଭେଲ କହିଲା, "ତୁମେ ଯେ ମନୁଷ୍ୟ ଭୂତ ନୁହଁ, ତାହା ମୁଁ କପରି ଜାଣିବି ?"

ସଙ୍ଗେ ସଙ୍ଗେ କିଏ ମାରଭେଲର ଗୋଟିଏ ହାତ ଟାଣିନେଲା ମାରଭେଲ ଅବାକ୍ ହୋଇ ଜଣେ ମନୁଷ୍ୟର ଦେହ ଅନୁଭବ କଲା ଛାତି, ପିଠି, ବେକ, ମୁଣ୍ଡ, ଦାଢ଼ି......

"ଆରେ, ତୁମେ ଛୁଆ ହୋଇଛ ବୋଲି ଜାଣିପାରୁଛି— କିନ୍ତୁ ତୁମକୁ ଦେଖିପାରୁନି କାହିଁକି ?"—କହିଲା ମାର୍‌ଭେଲ ।

ଅଦୃଶ୍ୟ ମାନବ କହିଲା, "ସେ ବହୁତ କଥା । ତେବେ ମନେରଖ, ମୁଁ ଭୂତ ନୁହେଁ, ତୁମ ପରି ରକ୍ତ ମାଂସର ମଣିଷ । ମୋତେ ଟିକିଏ ସାହାଯ୍ୟ କରିପାରିବ ?"

"ମୁଁ ତୁମକୁ କି ସାହାଯ୍ୟ କରିପାରେ ?"

"ମୁଁ ମଣିଷ । ମୋର ଖାଇବା, ପିଇବା, ଶୋଇବା, ପିନ୍ଧିବା ଇତ୍ୟାଦି ତ ଦରକାର ! ଅଦୃଶ୍ୟ ବୋଲି ମୁଁ ସେ ସବୁ ଯୋଗାଡ଼ କରିପାରୁନି । ତେଣୁ ମୁଁ ତୁମର ସାହାଯ୍ୟ ଚାହୁଁଛି । ବଦଳରେ ମୁଁ ତୁମକୁ ପ୍ରଚୁର ଅର୍ଥ ଦେବି । କଣ ତୁମେ ରାଜି ?"

"ତୁମେ ପରି ଅଦୃଶ୍ୟ—ମୋତେ କେମିତି ଟଙ୍କା ଦେବ ?"

"ଦେଖୁଛି ତୁମେ ଖୁବ୍ ବୋକା ମଣିଷ । ମୁଁ ଅଦୃଶ୍ୟ ରହି ଯେ କୌଣସି ବ୍ୟାଙ୍କ ବା ଧନୀ ଲୋକର କ୍ୟାସ ବାକ୍ସରୁ ଇଚ୍ଛାନୁଯାୟୀ ଧନ ନେଇଆସି ତୁମକୁ ଦେବି । ଏଥର ବୁଝିପାରିଲ ? କଣ ସାହାଯ୍ୟ କରିବ ତ ?"

ମାର୍‌ଭେଲ କିଛି ସମୟ ଭାବିଲା । ତା ପରେ ସେ କହିଉଠିଲା, 'ନାଁ, ମୁଁ ରାଜି ନୁହେଁ । କାରଣ ତୁମେ ଯେତେବେଳେ ନୋଟ୍‌-ଗୁଡ଼ାକ ଆଣିବ ସେତେବେଳେ ଲୋକେ ତୁମକୁ ସିନା ଦେଖିବେ ନାହିଁ, ଦେଖିବେ ଯେ ନୋଟ୍‌ଗୁଡ଼ାକ ଉଡ଼ିଯାଉଛି । ସେ ନୋଟ୍ ତୁମେ ମୋତେ ଦେଲାବେଳେ ଲୋକେ ଦେଖିବେ ଯେ ସେଗୁଡ଼ିକ ଉଡ଼ିଆସି ମୋ ପକେଟ୍‌ରେ ରହୁଛି । ଏହା ଦେଖି ଲୋକେ ମନେ କରିବେ ଯେ, ମୁଁ ମନ୍ତ୍ରବଳରେ ନୋଟ୍‌ଗୁଡ଼ିକ ଚୋରାଇ ଆଣୁଛି । ତା'ପରେ ପୋଲିସ ମତେ ଧରିନେବ । ମୁଁ ଏସବୁ ପାରିବି ନାହିଁ । ମୋତେ କ୍ଷମାକର । ମୁଁ ଯାଉଛି ।" ଏହା କହି ମାର୍‌ଭେଲ ଯିବାକୁ ଉଦ୍ୟତ ହେଲା ।

ଖପ୍ କରି ଅଦୃଶ୍ୟ ମାନବ ତାର ତର୍ଣ୍ଣି ଚିପିଧରି ଚିତ୍କାର କଲା – କୁଆଡ଼େ ପଳାଇଯିବ ? ତୁମେ ମୋ ଠାରୁ ଅନେକ କଥା ଶୁଣିଲ । ମୋ କଥାରେ ରାଜି ନ ହେଲେ ମୁଁ ତୁମକୁ ଖୁନ୍ କରିବି । ମୁଁ ଅଦୃଶ୍ୟ । ପୁଲିସ ମୋର କଣ କରିବ ? ବଞ୍ଚି ରହିବା ପାଇଁ ଯଦି ଇଚ୍ଛା ଥାଏ ତେବେ ତୁମକୁ ରାଜି ହେବାକୁ ହେବ ।”

ସନ୍ଧ୍ୟାର ଅନ୍ଧାର ସେତେବେଳେ ଘନେଇ ଆସୁଥିଲା । ଅଦୃଶ୍ୟ ମାନବ ମାର୍‌ଭେଲର ହାତ ଧରି ଟାଣିଟାଣି ନେଇଗଲା ତାକୁ ତା ସହିତ ।

## ସାତ

ଅଦୃଶ୍ୟ ମାନବ ମାରଭେଲକୁ ଟାଣି ଟାଣି ନେଇଗଲା ଏକବାରେ ମିସେସ୍ ହଲ୍‌ଙ୍କ ହୋଟେଲ ସାମନାକୁ । ମିସେସ୍ ହଲ୍ ସେତେବେଳକୁ ଅଦୃଶ୍ୟ ମାନବ ରହୁଥିବା କୋଠରୀକୁ ପରିଷ୍କାର କରିଦେଇଛନ୍ତି । ଘର ଭିତରେ ଫୁଲଦାନୀରେ ଫୁଲ ରଖାଯାଇଛି ।

ଦି’ପହର ବେଳେ ମିଷ୍ଟର ବାନଟିଂ ଏବଂ କାସ୍ ଆସିଥିଲେ ମିସେସ୍ ହଲ୍‌ଙ୍କ ହୋଟେଲକୁ । ସେମାନେ ଅଦୃଶ୍ୟ ମାନବର ଜିନିଷ ଗୁଡ଼ିକ ଦେଖିବାକୁ ଚାହିଁଲେ । ମିସେସ୍ ହଲ୍ ସେମାନଙ୍କୁ ନେଇଗଲେ ତା କୋଠରୀ ନିକଟକୁ ଓ କହିଲେ, “ତାର ଏଠାରେ ଥିବା ଜିନିଷ ମଧ୍ୟରେ ଥିଲା କେତେଟା ବୋତଲ, କେତେ ଖଣ୍ଡ ବହି ଏବଂ ଆଉ କେତେଗୋଟି ଡାଏରୀ । ମୁଁ ସେସବୁ ଟେବୁଲ ଉପରେ ରଖିଦେଇଛି ।”

ଉତ୍ସାହିତ ହୋଇ ଡାକ୍ତର କାସ୍ କହିଲେ, “ସେଗୁଡ଼ିକ ଭିତରୁ ମୁଁ ଲୋକଟାର ପରିଚୟ ବାହାର କରିପାରିବି ।”

ମିସେସ୍ ହଲ୍ ଡାକ୍ତର କାସ୍‌ଙ୍କ ହାତକୁ ବଢ଼ାଇଦେଲେ ସେହି କୋଠରୀର ଚାବି । ଚାବି ଖୋଲିଦେଲେ ଡାକ୍ତର କାସ୍ ଏବଂ ମିଷ୍ଟର ବାନଟିଂ ପଶିଲେ ଅଦୃଶ୍ୟ ମାନବ ରହୁଥିବା କୋଠରୀ ଭିତରକୁ ଓ ଦୁଇଖଣ୍ଡ ଡାଏରୀ ଉଠାଇନେଇ ପୃଷ୍ଠା ଓଲଟାଇବାକୁ ଲାଗିଲେ । କିଛି ସମୟ ପରେ ଡକ୍ତର କାସ୍ କହିଲେ, "ନା, ପାରିବ ନାହିଁ । ଲୋକଟା ସବୁକଥା ସାଙ୍କେତିକ ଭାଷାରେ ଲେଖିଛି ।" ବାନଟିଂ ମଧ୍ୟ ସେହି କଥା କହିଲେ ।

ଏହି ସମୟରେ ସେମାନଙ୍କର ମନେହେଲା ଯେପରି କିଏ ଦରଜା ଠେଲି ସେହି କୋଠରୀ ଭିତରକୁ ପଶୁଛି । ଉଭୟେ ଚାହିଁଲେ ଦରଜା ଆଡ଼କୁ ଓ ଦେଖିଲେ ଦରଜା ନିକଟରେ ଛିଡ଼ା ହୋଇଛି ମାର୍‌ଭେଲ । ମିଷ୍ଟର ବାନଟିଂ କହିଲେ—ଚୋର କଣ ଦରକାର ? ଏଗୁଡ଼ାକ ଶାନ୍ତିରେ କାମ କରେଇ ଦେବେନି । ଭିତରୁ ଦରଜାଟା ବନ୍ଦ କରିବା ଦରକାର ।

ମିଷ୍ଟର ବାନଟିଂ ଉଠିଯାଇ ଦରଜାଟା ଭିତରୁ ବନ୍ଦ କରି ଚାବି ଦେଇଦେଲେ । ତା ପରେ ଆସି ବସିପଡ଼ିଲେ ନିଜ ଜାଗାରେ । ଉଭୟେ ପୁଣି ମନଦେଲେ ଡାଏରୀ ପୃଷ୍ଠା ଉପରେ । ହଠାତ୍ ମିଷ୍ଟର ବାନଟିଂଙ୍କର ମନେହେଲା ଯେପରି କିଏ ତାଙ୍କର ବେକ ସଣ୍ଢ଼ାଟା ଚିପିଧରିଛି । ସେ ମୁହଁ ବୁଲାଇ ପଛକୁ ଚାହିଁବାପାଇଁ ଚେଷ୍ଟାକଲେ, କିନ୍ତୁ ପାରିଲେନି । ଅତି କଷ୍ଟରେ ତାଙ୍କ ମୁହଁରୁ ଗୋଟିଏ ଶବ୍ଦ ଶୁଣାଗଲା—"ବାପ୍‌ରେ ବାପ୍ !"

ଠିକ୍ ସେହି ସମୟରେ ପଛରୁ କିଏ କହିଲା, "ମୋ କୋଠରୀରେ ପଶିବାକୁ ଓ ମୋର ଡାଏରୀ ଦେଖିବାକୁ କିଏ ତୁମକୁ ଅଧିକାର ଦେଲା ? ଯଦି ତୁମ ଦୁହିଁଙ୍କୁ ମୁଁ ଏଇକ୍ଷଣି ଖୁନ୍ କରିଦିଏ ତାହେଲେ ତୁମକୁ କିଏ ରକ୍ଷା କରିବ ?" ଡାକ୍ତର କାସ୍ ମୁହଁ

ଫେରାଇ କଏ କରୁଛି ଦେଖିବା ପାଇଁ ଚେଷ୍ଟାକଲେ; କିନ୍ତୁ ପାରିଲେ ନାହିଁ । ସେ ଅନୁଭବ କଲେ ଯେପରି କଏ ତାଙ୍କ ବେକଟା ଖୁବ୍ ଜୋର୍‌ରେ ଭିଡ଼ିଧରିଛି । ତାପରେ ତାଙ୍କ ମୁଣ୍ଡଟା କଏ ନେଇ ପିଟି ଦେଲା ବାନଟିଂଙ୍କ ମୁଣ୍ଡରେ ଖୁବ୍ ଜୋର୍‌ରେ । ଉଭୟେ ଭୟ ଓ ଯନ୍ତ୍ରଣାରେ ଚିତ୍କାର କରିଉଠିଲେ ଏବଂ ନିଜ ନିଜ ମୁଣ୍ଡ ଆଉଁସିବାକୁ ଲାଗିଲେ ।

କର୍କଶ କଣ୍ଠରେ ଅଦୃଶ୍ୟ ମାନବ ପଚାରିଲା—"ମୋ ପୋଷାକ-ପତ୍ର କାହିଁ ?"

ଡାକ୍ତର କାସ୍ ଥତମତ ହୋଇ ଉତ୍ତରଦେଲେ, "ଆପଣଙ୍କ ଲୁଗାପଟା···ଆମେମାନେ ଠିକ୍ ଜାଣିନୁ । ବୋଧହୁଏ ମିସେସ୍ ହଲ୍ ସେଗୁଡିକ ରଖିଛନ୍ତି ।"

ଅଦୃଶ୍ୟ ମାନବ ମିଷ୍ଟର ବାନଟିଂଙ୍କ କାନ ପାଖରେ କଣ ପ୍ରସ୍ତାବ କଲା କେଜାଣି, କିନ୍ତୁ ତାହା ଶୁଣିବା ପରେ ସେ କହିଲେ, "ନା ନା, ତାହା କଦାପି ହୋଇପାରିବନାହିଁ ।"

"ତାହେଲେ ମର ।"

ମିଷ୍ଟର ବାନଟିଂ ଏବଂ ଡାକ୍ତର କାସ୍ ଦେଖିଲେ ଖଣ୍ଡେ ଲୁହାଛଡ଼ ଶୂନ୍ୟରେ ଘୂରି ଘୂରି ସେମାନଙ୍କ ଆଡ଼କୁ ଆସୁଛି । ଅଦୃଶ୍ୟ ମାନବ କହିଲା, "ଏହି ଛଡ଼ରେ ତୁମ ମୁଣ୍ଡକୁ ଛତୁ କରିଦେବି; କେହି ମୋତେ ବାଧା ଦେଇ ପାରିବେ ନାହିଁ—କାରଣ ମୁଁ ଅଦୃଶ୍ୟ । ତେଣୁ ତୁମେମାନେ ମୋ ପ୍ରସ୍ତାବରେ ରାଜି ହୁଅ ନଚେତ୍ ମର ।"

ଡାକ୍ତର କାସ୍ ଏବଂ ମିଷ୍ଟର ବାନଟିଂଙ୍କ ଚିତ୍କାର ଶବ୍ଦ ଶୁଣିପାରିଲେ ମିଷ୍ଟର ହଲ୍ । ସେ ତତ୍‌କ୍ଷଣାତ୍ ଉପରକୁ ଆସି ଦେଖିଲେ ଯେ ଘରର ଦରଜା ଭିତରୁ ବନ୍ଦ ହୋଇଛି । ଦରଜାରେ

ଧକ୍କା ଦେଇ ସେ କହିଲେ—"ମିଷ୍ଟର ବାନଟିଂ ! ଡାକ୍ତର କାସ୍ ! ଆପଣମାନଙ୍କର କଣ ହୋଇଛି ?" ମିଷ୍ଟର ବାନଟିଂ କହିଲେ, "କିଛି ହୋଇନାହିଁ ମିଷ୍ଟର ହଲ୍ । ଆପଣ ଦୟାକରି କୋଠରୀ ଭିତରେ ପଶନ୍ତୁ ନାହିଁ ।" ମିଷ୍ଟର ହଲ୍ ଭିତରକୁ ନଯାଇ ଛିଡ଼ା ହୋଇଗଲେ ଦରଜା ନିକଟରେ । ତାପରେ ଘର ଭିତରୁ ଶୁଣାଗଲା ଧସ୍ତାଧସ୍ତିର ଶବ୍ଦ । ମିଷ୍ଟର ହଲ୍ ଯେତେ ଥର ଦରଜା ଖୋଲି ଭିତରକୁ ପଶି ଘଟଣା ଜାଣିବାକୁ ଚାହିଁଲେ ସେତେ ଥର ମିଷ୍ଟର ବାନଟିଂ କହିଲେ, "କିଛି ହୋଇନ । ଆପଣ ଦୟାକରି ବର୍ତ୍ତମାନ ଘରେ ପଶନ୍ତୁ ନାହିଁ ।"

ତାପରେ ଘର ଭିତର ନିସ୍ତବ୍ଧ ହେଲା । ମିଷ୍ଟର ହଲ୍ କଣ ହେଲା ଜାଣିବାପାଇଁ ବ୍ୟାକୁଳ । ସେତିକବେଳେ ହୋଟେଲ ପାଖର ଜଣେ ଦୋକାନୀ ଧାଇଁଆସି ମିଷ୍ଟର ହଲ୍‌କୁ ଜଣାଇଲା ଯେ ତାଙ୍କ ହୋଟେଲରୁ ବାହାରି ବୁଜୁଲାଏ ପୋଷାକ ଓ କିଛି ବହି ରାସ୍ତାରେ ଉଡ଼ି ଉଡ଼ି ଯାଉଛି ।

ଖବରଟା ଶୁଣି ମିଷ୍ଟର ହଲ୍ ଦୌଡ଼ି ଆସିଲେ ହୋଟେଲ ସାମନାକୁ । ଠିକ୍ ଏତିକବେଳେ ଡାକ୍ତର କାସ୍ ତାଙ୍କ ପଛେ ପଛେ ଧଇଁସଇଁ ହୋଇ ଆସି ଉତ୍ତେଜିତ ସ୍ୱରରେ କହିଲେ—"ତାକୁ ପଳାଇବାକୁ ଦିଅନ୍ତୁ ନାହିଁ ମିଷ୍ଟର ହଲ୍ ! ତାର ହାତରେ ପୋଷାକର ବୁଜୁଲା ଥିବାଯାଏ ତାକୁ ଚିହ୍ନି ହେବ । ଲୋକଟା ଆମକୁ ଭୟ ଦେଖାଇ ଗାଧୁଆଘର ବାଟେ ଖସିଆସିଛି । ତାକୁ ଆପଣମାନେ ସମସ୍ତେ ମିଶି ଧରିପକାନ୍ତୁ ଯେ କୌଣସି ପ୍ରକାରେ ! ଉପଯୁକ୍ତ ଶାସ୍ତି ଦେବା ।"

ମିଷ୍ଟର ହଲ୍ ବାହାରକୁ ଯାଇ ଖୋଜିବାକୁ ଲାଗିଲେ ପୋଷାକର ବୁଜୁଲାଟା ଏବଂ ବହିଗୁଡାକ । ସେତେବେଳକୁ

ସେଗୁଡ଼ିକ କେଉଁଆଡ଼େ ଅଦୃଶ୍ୟ ହୋଇଯାଇଥିଲା । ହୋଟେଲକୁ ଫେରଆସି ଡ଼ାକ୍ତର କାସ୍‌ଙ୍କ ଆଡକୁ ଚାହିଁ ଚମକି ଉଠିଲେ ମିଷ୍ଟର ହଲ୍ । ଉତ୍ତେଜନା ଯୋଗୁ ତାଙ୍କ ଆଡ଼କୁ ନଜର ପଡ଼ିନଥିଲା କାହାର । ଦେଖାଗଲା ଯେ ଡାକ୍ତର କାସ୍ ପ୍ୟାଣ୍ଟ ବଦଳରେ ଗୋଟିଏ ଟେବୁଲକ୍ଲଥ ପିନ୍ଧିଛନ୍ତି । ଆଉ ମିଷ୍ଟର ବାନଟିଂ ? ତାଙ୍କ ଅବସ୍ଥା ଆହୁରି ଶୋଚନୀୟ । ଖଣ୍ଡେ ଖବରକାଗଜ ଗୁଡ଼ାଇହୋଇ କୌଣସି ପ୍ରକାରେ ଲଜ୍ଜା ନିବାରଣ କରିଛନ୍ତି ସେ । ଏହି ଦୃଶ୍ୟ ଦେଖି ଏ ଦୁଃଖ ସମୟରେ ମଧ୍ୟ ସମସ୍ତେ ହସିଉଠିଲେ ।

ସନ୍ଧ୍ୟା ପରେ ହେଲା ରାତି । ଷ୍ଟେସନ ରାସ୍ତାରେ ବର୍ତ୍ତମାନ ମୁଖରେ ଚାଲିଥିଲା ମାର୍ଭେଲ । ତାର ହାତରେ ଥିଲା ଗୋଟିଏ ବୁନ୍ଦୁଲା ପୋଷାକ ଏବଂ କେତେ ଖଣ୍ଡ ବହି । ତାକୁ ଦେଖିଲେ ମନେହେବ କିଏ ଯେପରି ତାକୁ ଟାଣି ଟାଣି ନେଇଯାଉଛି ଷ୍ଟେସନ ଆଡକୁ । ଅଦୃଶ୍ୟ ମାନବର କଣ୍ଠସ୍ୱର ଶୁଣାଗଲା, "ଶୀଘ୍ର ଶୀଘ୍ର ଆସ ମାରଭେଲ । ପଳାଇବାକୁ ଯାଇ ତୁମେ ଅଯଥା ମୋର ବହୁତ ସମୟ ନଷ୍ଟ କଲ ।" ମାରଭେଲ କହିଲା, "ମୁଁ ତ ପଳାଇ ଯାଉ ନଥିଲି ଧର୍ମାବତାର—କେବଳ ବାଟ ଭୁଲିଯାଇଥିଲି ।"

ଅଦୃଶ୍ୟ ମାନବ କହିଲା "ପୁଣି ମିଛ କହୁଛ ? ତୁମେ ପଳାଇ ଯାଉ ନ ଥିଲ ?"

ମାରଭେଲ କାନ୍ଦ କାନ୍ଦ ହୋଇ କହିଲା, "ଆଜ୍ଞା, ମୁଁ ଆଦୌ ମିଛ କହୁନି । ସତରେ ରାସ୍ତା ଭୁଲି ଅନ୍ୟ ଦିଗରେ ଚାଲିଯାଉଥିଲି । ତୁମ୍ଭେ ମୋତେ ଏଥରର ଛାଡ଼ିଦିଅନ୍ତୁ ଦୟାକରି । ମୋ କୁଡ଼ିଆକୁ ମୁଁ ଫେରିଯିବି ।

"ମିଛରେ ତୁମେ ଡରୁଛ ମାରଭେଲ । ତା ଛଡ଼ା, ତୁମକୁ ଛାଡ଼ି ମୁଁ ଦଣ୍ଡେ ଚଳି ପାରିବି ନାହିଁ । ଖିଆପିଆ ଓ ରହିବାରେ

ମୋର ଘରେ ଅସୁବିଧା ହେବ । ଯଦି ତୁମେ ମୋ କଥା ନ ମାନିବ, ତେବେ ମୁଁ ତୁମକୁ ଖୁନ୍ କରିବାକୁ ବାଧ୍ୟ ହେବି ।”

ମାର୍ଭେଲ୍ ଅନୁଭବ କଲା କିଏ ଯେପରି ତାର ବେକ ପଣ୍ଡାକୁ ଚିପି ଧରିଛି । ସେ କରୁଣ କଣ୍ଠରେ କହିଲା, “ହଜୁର, ମୋତେ ମାରନ୍ତୁ ନାହିଁ । ମୋତେ ଛାଡ଼ିଦିଅନ୍ତୁ ଦୟାକରି ।”

ଅଦୃଶ୍ୟ ମାନବର କଣ୍ଠସ୍ୱର କହିଲା—“ମୁଁ ତୁମକୁ ଛାଡ଼ି-ପାରିବିନାହିଁ — ବାଜେ କଥା କହି ଲାଭ କଣ ? ଆମେ ଗାଁ ପାଖରେ ଆସି ପହଞ୍ଚିଗଲେଣି । ଦେଖ, କାହାରି ସଙ୍ଗେ ରାସ୍ତାରେ ଯେପରି କଥା ନକହ···ଆଉ ମନେରଖ, ପଳାଇଯିବାକୁ ଚେଷ୍ଟାକଲେ ତୁମକୁ ହତ୍ୟା କରିବି । ତେଣୁ ମୋ ସହିତ ମିଳିମିଶି ଚଳ । ମୁଁ ତୁମକୁ ବଡ଼ଲୋକ କରିଦେବି ।”

ମାର୍ଭେଲ୍ ଭୟରେ କିଛି କହିଲା ନାହିଁ ସତ—କିନ୍ତୁ ମନେ ମନେ ଭାବିଲା, “ଏ ଲୋକଟାକୁ କହି ଲାଭ ନାହିଁ । ଭାଗ୍ୟରେ ଯାହା ଥିବ ।”

## ଆଠ

ତହିଁ ଆରଦିନ ଗୋଟିଏ ଜଳଖିଆ ଦୋକାନ ସାମନାରେ ଖଣ୍ଡିଏ ଚେୟାର ଉପରେ ମାର୍ଭେଲ୍ ବସିଥିବାର ଦେଖାଗଲା । ତା ପାଖରେ ଥିଲା ଗୋଟିଏ ବୁନ୍ଦୁଲା ବନ୍ଧା । ମାର୍ଭେଲର ଚେହେରା ଦେଖିଲେ ମନେହେବ ଯେପରି ସେ ରାତିସାରା ଶୋଇନି--ଭୀଷଣ ଉତ୍ତେଜନାରେ ତାର ରାତିଟି କଟିଛି । ଜଣାଯାଉଥିଲା ସେ ଯେପରି ଚିନ୍ତାମଗ୍ନ । ହୋଟେଲକୁ ଲୋକ ଆସୁଛନ୍ତି ଯାଉଛନ୍ତି । କିଛି ସମୟ ପରେ

ସେଠାକୁ ଆସିଲା ଜଣେ ଜାହାଜ ଖଲାସୀ । ତାର ବୋଧହୁଏ ବିଶେଷ କାର୍ଯ୍ୟ ନ ଥିଲା । ତେଣୁ ମାର୍‌ଭେଲକୁ ଏପରିଭାବେ ବସିଥିବା ଦେଖି ତା ସହିତ ଆଳାପ ଜମେଇବା ମତଲବରେ ସେ ଆସି ବସିପଡ଼ିଲା ତା ପାଖରେ—ସାମନାରେ ଥିବା ଖବରକାଗଜଟାକୁ ଉଠାଇନେଇ ।

ତା ଉପରେ ଆଖି ପକାଇଲା । କିଛି ସମୟ ପରେ ଲୋକଟା ମନକୁ ମନ କହିଲା, "ଏସବୁ ଗୁଲଖଟି ଗପ । କାଗଜ ବିକ୍ରି କମ୍ ହେଲେ ଏପରି ସବୁ ଉଦ୍ଭଟ ଖବର ଛାପିବେ ସେମାନେ । ଆଜିର ଖବରକାଗଜରେ ଯେଉଁ ଅଦୃଶ୍ୟ ମାନବ କଥା ଛପାଯାଇଛି ତାହା କଣ କସ୍ମିନ୍‌କାଳେ ସମ୍ଭବ ହୋଇପାରେ ? କଣ କହୁଛନ୍ତି ଆପଣ ?"

ମାର୍‌ଭେଲ୍ ଜବାବ ଦେଲା, "ହୋଇପାରେ ।"

ଲୋକଟା ପୁଣି କହିଲା, "ମନୁଷ୍ୟ···ପୁଣି ଅଦୃଶ୍ୟ···ଏହା ଯେପରି ଘୋଡ଼ା ବୁଡ଼ିଲା ପରି । ଖବରକାଗଜର ସମ୍ପାଦକଙ୍କ କାମ ହେଲା ଯେତେ ଗୁଲଖଟି ଗପ ଛାପିବା । ଆମେ କଣ ସେହି ଖବରଗୁଡ଼ାକୁ ବିଶ୍ୱାସ କରିବୁ ?"

ମାର୍‌ଭେଲ୍ ହଠାତ୍ ଉତ୍ତେଜିତ ହୋଇ କହିଲା—"ଆଜ୍ଞା, ଅଦୃଶ୍ୟ ମାନବ ଅଛି । ତେଣୁ ଖବରକାଗଜ ଗୁଲଖଟିଗପ ଛାପିନି ।"

ଲୋକଟା ଆଶ୍ଚର୍ଯ୍ୟ ହୋଇ ତା ଆଡ଼େ ଚାହିଁଲା । ମାର୍‌ଭେଲ ପୁଣି କହିଲା —"ଅଦୃଶ୍ୟ ମାନବ ସମ୍ପର୍କରେ ଖବରକାଗଜ ସମ୍ପାଦକମାନେ ଖୁବ୍ କମ୍ ଜାଣନ୍ତି । ତା ସମ୍ବନ୍ଧେ ସେମାନଙ୍କ ଅପେକ୍ଷା ବେଶି ଜାଣେ ମୁଁ । ଥରେ ତା ହାବୁଡ଼ରେ ପଡ଼ିଗଲେ ଯେ ଏକବାରେ··· ମାର୍‌ଭେଲ୍‌ର କଥା ସରିନାହିଁ ସେ ଚିତ୍କାର କରି ଉଠିଲା ।

"କଣ ହେଲା ବାବୁ ?"

"ବଥା···"

"କେଉଁଠି ?"

"ଦାନ୍ତରେ ! ଟିକେ ଧନ ଦେଲ ଖାଇବା ପାଇଁ ଦାନ୍ତରେ କଷ୍ଟ ହେଉଛି ।"

"ଦାନ୍ତରେ ବ୍ୟଥା ତ ଆପଣ ଦେହରେ ହାତ ବୁଲାଉଛନ୍ତି କାହିଁକି ?"

"ଦେହରେ ହାତ ବୁଲାଉଛି···ମୁଁ ଭାବଥିଲି···ଉଃ, ନାଁ ନାଁ, ମୁଁ ଯାଉଛି ।" କହି ବୁଢ଼ାଟି ହାତରେ ଧରି ତତ୍‌କ୍ଷଣାତ୍ ଚାଲିଗଲା ମାର୍‌ଭେଲ ।

ମାର୍‌ଭେଲ୍‌ର ଏଣୁ ତେଣୁ କଥାବାର୍ତ୍ତା ଏବଂ ବ୍ୟବହାରରେ ଲୋକଟା ଆଶ୍ଚର୍ଯ୍ୟ ହୋଇ ତାର ଯିବା ବାଟ ଆଡ଼କୁ ଚାହିଁରହିଲା । ତା ପରେ ପଛକୁ ମୁହଁ ବୁଲାଇ ଆହୁରି ଆଶ୍ଚର୍ଯ୍ୟ ହୋଇଗଲା । ହୋଟେଲର କ୍ୟାସ ବାକ୍‌ସରୁ କେତେ ଖଣ୍ଡ ନୋଟ୍ ପବନରେ ଉଡ଼ିଯାଉଛି । ଲୋକଟା ନୋଟ୍‌ଗୁଡ଼ାକ ଧରିବାକୁ ଆଗେଇଗଲା, ମାତ୍ର ହଠାତ୍ ଏକ ପ୍ରଚଣ୍ଡ ଘୁଷିର ଆଘାତରେ ଭୂଇଁ ଉପରେ ବସିପଡ଼ିଲା । ତା ପରେ ଉଠି ଦେଖିଲା ନୋଟ୍‌ଗୁଡ଼ାକ ହୋଟେଲରୁ ବାହାରକୁ ବାହାରିଯାଇ ଅଦୃଶ୍ୟ ହେଉଛି ।

## ନଅ

ସେତେବେଳକୁ ସନ୍ଧ୍ୟା ହୋଇଯାଇଛି । ଡାକ୍ତର କେମ୍ପ୍ ବସିଛନ୍ତି ପାହାଡ଼ ଉପରେ ଥିବା ତାଙ୍କର ମନୋରମ ଘରଟି ଭିତରେ । ଘରଟି ସୁସଜ୍ଜିତ । ଗୋଟିଏ ମାତ୍ର ବଖରା । ବଖରାଟିର ତିନ ଦିଗରେ ତିନୋଟି ସୁବୃହତ୍ ଝରକା । ଯେ କୌଣସି ଗୋଟିଏ ଝରକା ଖୋଲି ଦେଲେ ବାହାରର ସୁନ୍ଦର ପ୍ରକୃତି ଦୃଷ୍ଟିରେ ପଡ଼େ । ଘରଟି ନିଜେ

ପସନ୍ଦକରି ତିଆରି କରିଛନ୍ତି ଡାକ୍ତର କେମ୍ପ୍ । ଘରଟି ପାହାଡ଼ ଉପରେ ଏବଂ ସେ ଏହି ଘରଟିକୁ ସଜାଇଛନ୍ତି ଏକାଧାରରେ କାମ କରିବା ଘର ଏବଂ ବିଶ୍ରାମ କକ୍ଷ ହିସାବରେ । କାନ୍ଥର ଆଲମିରା-ଗୁଡ଼ିକ ବିଭିନ୍ନ ପ୍ରକାର ବହି ଓ ଯନ୍ତ୍ରପାତିରେ ଭରିରହିଛି ।

ସୂର୍ଯ୍ୟ ଅସ୍ତ ଯାଇଥିଲେ ମଧ୍ୟ ଗୋଧୂଳିର ଆଲୋକ ସେତେବେଳେ ମଧ୍ୟ ଲିଭିଯାଇନ ସମ୍ପୂର୍ଣ୍ଣ ଭାବରେ । ଘରର ସବୁ ଝରକା ଖୋଲା । ତେଣେ ଡାକ୍ତର ବହିରୁ ମୁହଁ ଟେକି ବାହାରକୁ ଚାହିଁଲେ । ଦେଖାଗଲା କାର୍ତ୍ତନ ପାହାଡ଼ର ଗୋଟିଏ ଅଂଶ ଅସ୍ତଗାମୀ ସୂର୍ଯ୍ୟଙ୍କ ଆଲୋକ ପଡ଼ି ବେଶ ସୁନ୍ଦର ଦିଶୁଛି । ଏତିକିବେଳେ ଗୋଟିଏ ଜିନିଷ ତାଙ୍କର ଦୃଷ୍ଟି ଆକର୍ଷଣ କଲା । ତାହାହେଲା ମନୁଷ୍ୟାକୃତି ଗୋଟିଏ ଧାବମାନ ଜୀବ । ଦେଖାଯାଉଥିଲା ଲୋକଟା ଯେପରି ପାହାଡ଼ ଚଢ଼ି ତାଙ୍କ ଘର ଆଡ଼କୁ ଆସୁଛି ।

"ଖବରକାଗଜ ବିକ୍ରେତା"—ମନକୁ ମନ କହିଲେ କେମ୍ପ୍ । ଅଦୃଶ୍ୟମାନବର ଖବର କିଛି ବାହାରିଛି ବୋଧହୁଏ ଖବର-କାଗଜରେ ! ଡାକ୍ତରବାବୁ ଝରକା ପାଖକୁ ଯାଇ ଦେଖିଲେ ଯେ ଲୋକଟା ଦୌଡ଼ୁଛି—ବୋଧହୁଏ ତାକୁ କିଏ ଗୋଡ଼ାଇଛି । ମୁହଁରେ ତାର ଭୟର-ଚିହ୍ନ । ଦୌଡ଼ୁଛି ପ୍ରାଣପଣେ । ତା, ଦେହରୁ ଝଣ ଝଣ ଶବ୍ଦ ବାହାରୁଛି । ଏଥିରୁ ଜଣାଯାଉଛି ଧାତୁ ମୁଦ୍ରା ପୂର୍ଣ୍ଣ ମୁଣିଟିଏ ସେ ଧରିଛି । ଲୋକଟା କେଉଁଆଡ଼େ ନ ଚାହିଁ ଦୌଡ଼ୁଛି ସିଧାଭାବରେ, ଅନନ୍ୟଶ୍ବାସୀ ହୋଇ । ତା ପାଟିରୁ ବହିଯାଉଛି ଲାଳ ଏବଂ ମୁହଁଟା ଦେଖାଯାଉଛି ପାଚିମାଙ୍କଡ଼ ମୁହଁଠାରୁ ଆହୁରି ଅଧିକ ଲାଲ । ତାକୁ ଦେଖିଲେ ମନେହେବ ମରିପଡ଼ି ଦୌଡ଼ୁଛି ସେ । କିନ୍ତୁ ସେଠାରେ ବାସିନ୍ଦା ଜାଣିପାରି ନଥାନ୍ତି କାହିଁକି ସେ ଦୌଡ଼ୁଛି । ସେତିକିବେଳେ ଗୋଟିଏ କୁକୁର ଭୁକିବାକୁ ଲାଗିଲା ଉପରଓଁ

ଘବରେ ଓ ଭୁକ ଭୁକ ଗୋଟିଏ ଘର ଭିତରକୁ ପଶିଗଲା ଆଶ୍ରୟ ନେବା ପାଇଁ । କିଏ ଜାଣେ ସେ କେଉଁ ଅଜଣା ବିପଦ ଆଶଙ୍କା କରୁଥିଲା ?

ଏହା ଦେଖି ପଥଚାରୀମାନେ ଅବାକ୍ ହୋଇ ଛିଡ଼ା ହୋଇଯାଇ ଥିଲେ ରାସ୍ତା ଉପରେ । ଏହି ସମୟରେ ଯେପରି ଝଲକାଏ ପବନ ସେମାନେ ପିନ୍ଧିଥିବା ପୋଷାକ ଉପରେ ଘଷିହୋଇ ଚାଲିଗଲା । ଥପ୍ ଥପ ପାଦ ଶବ୍ଦ କେହି କେହି ଶୁଣିବାକୁ ପାଇଲେ । କେହି କେହି ଦ୍ରୁତ ନିଶ୍ୱାସର ଶବ୍ଦ ମଧ୍ୟ ଶୁଣିପାରିଲେ । ସେହି ଶବ୍ଦ ଥିଲା ଦୌଡ଼ୁଥିବା ଲୋକର ନିଶ୍ୱାସର ଶବ୍ଦପରି । ପଥଚାରୀମାନେ ଖୁବ ଡରିଲେ, କେହି କେହି ଚିତ୍କାର କରି ଉଠିଲେ । କେହି କେହି ମଧ୍ୟ ରାସ୍ତା ଛାଡ଼ି ପାହାଡ଼ ଉପରକୁ ଦୌଡ଼ିଲେ । ଏହି ଚିତ୍କାର ସମୟରେ ଏକ ଅଦୃଶ୍ୟ ଆତଙ୍କ ଯେପରି ଦ୍ରୁତ ଗତିରେ ଖସିପଡ଼ିଲା ପାହାଡ଼ର ପାଦଦେଶରୁ ସହର ଭିତରକୁ ।

ସେହି ଶ୍ରେଷ୍ଠ ମନୁଷ୍ୟଟି ମାରଭେଲ ବ୍ୟତୀତ ଆଉ କେହି ନୁହେଁ । ମାର୍ଭେଲ ସହରର ରାସ୍ତାରେ ପାଦ ଦେବା ଆଗରୁ ହିଁ ସବୁ ରାସ୍ତାରେ ବିଭୀଷିକାର ରାଜତ୍ୱ ଆରମ୍ଭ ହୋଇଯାଇଥିଲା । ଘରେ ଘରେ ଦରଜା ବନ୍ଦ । ରାସ୍ତାରେ ଥିବା ଲୋକମାନେ ଘର ଭିତରକୁ ଚାଲିଯାଇଛନ୍ତି । ଏହି ଆତଙ୍କ ସୃଷ୍ଟି ହୋଇଥିଲା ସେହି ଅଦୃଶ୍ୟ ମାନବ ଦ୍ୱାରା, ଯାହାର ଲୋମହର୍ଷଣକାରୀ ବିବରଣୀ ପ୍ରକାଶ ପାଉଛି ସମସ୍ତ ଖବରକାଗଜରେ ।

...ହେଇ ଆସିଗଲା ଅଦୃଶ୍ୟ ମାନବ !

...ଆସିଗଲା ବାର୍ଡ଼କ ସହରକୁ ।

ପାହାଡ଼ ତଳେ ରାସ୍ତା କଡ଼ରେ ଥିଲା ଜଲି କ୍ରିକେଟର୍ସ ହୋଟେଲ । ହୋଟେଲରେ ବସି କଫି ପିଉଛନ୍ତି ଲୋକମାନେ ।

ସେମାନଙ୍କ ମଧ୍ୟରେ ଥିଲେ ଜଣେ ଘୋଡା ଗାଡିର କୋଚମ୍ୟାନ୍, ଦାଢ଼ିବାଲା । ଜଣେ ମାର୍କିନ୍ ଭଦ୍ରବ୍ୟକ୍ତି, ଜଣେ ପୁଲିସ କନେଷ୍ଟବଲ । ଏତିକିବେଳେ ଶୁଣାଗଲା ଚିତ୍କାର ।

"ଚିତ୍କାରଟା କାହାର ?" ଜାଣିବାକୁ ଚାହିଁଲା କୋଚମ୍ୟାନ ।

"ହୁଏତ କେଉଁଠି ନିଆଁ ଲାଗି ଯାଇଛି ।"—କହିଲା ହୋଟେଲ ମାଲିକ ।

ହଠାତ୍ ଶୁଣାଗଲା ଅନେକଗୁଡ଼ିଏ ପାଦର ଶବ୍ଦ—ଦୌଡ଼ି-ଛନ୍ତି ଅନେକ ଲୋକ । ହୋଟେଲ ଦରଜା ଖୋଲି ଭିତରକୁ ପଶି ଆସିଲା ମାର୍‌ଭେଲ ଧଇଁସଇଁ ହୋଇ । ଆତଙ୍କିତ ମାର୍‌ଭେଲ୍ ଚିତ୍କାର କଲା—"ଅଦୃଶ୍ୟ ମାନବ ଆସୁଛି । ମତେ ଖୁନ କରିଦେବ —ଆପଣମାନେ ମତେ ବଞ୍ଚାନ୍ତୁ ।"

କନେଷ୍ଟବଲ କହିଲା, "ଦରଜାଟା ବନ୍ଦ କର । ମୁଁ ଥାଉ ଥାଉ ଘର ଭିତରକୁ କିଏ ପଶିଯିବ ଦେଖିବି ।" ଏହା କହିବା ସଙ୍ଗେ ସଙ୍ଗେ ସେ ଦରଜା ନିକଟକୁ ଦୌଡ଼ିଯାଇ ଦରଜାଟା ବନ୍ଦ କରିଦେଲା । ମାର୍କିନ ଭଦ୍ରଲୋକ ଉଠିଯାଇ ପଛ ଦରଜାଟା ବନ୍ଦ କରିଦେଲେ ।

ମାର୍‌ଭେଲ କାନ୍ଦି କାନ୍ଦି କହୁଥାଏ, "ମୋତେ ଗୋଟିଏ ଘରେ ତାଲା ବନ୍ଦ କରି ରଖିଦିଅନ୍ତୁ । ମୋତେ ଧରିବା ପାଇଁ ସେ ଆସୁଛି । କୌଣସି ପ୍ରକାରେ ତା ହାବୁଡ଼ରୁ ଖସିଯାଇଛି । ସେ ମତେ ଧରିଲେ ଆଉ କିଏ ମତେ ରଖିବ ? ସଙ୍ଗେ ସଙ୍ଗେ ଖୁନ୍ କରିଦେବ ।"

କଳା ଦାଢ଼ିବାଲା ଲୋକଟି କହିଲା—"ଏଠାରେ ତୁମର କି ଭୟ ? ଦରଜାଟା ତ ବନ୍ଦ ! କିନ୍ତୁ ଘଟଣାଟା କଣ ?"

ଠିକ୍ ସେତିକିବେଳେ ହୋଟେଲର ଦରଜାରେ ପ୍ରଚଣ୍ଡ ଧକ୍କା ପଡ଼ିବାର ଶୁଣାଗଲା । ସେହି ଧକ୍କା ଏତେ ପ୍ରଚଣ୍ଡ ଥିଲା ଯେ

ମୋଟା କାଠର ଦରଜାଟା ଥରି ଥରି ହୋଇ କମ୍ପି ଉଠିଲା । ବାହାରେ ଶୁଭାଗଲା ଦୁମ୍‌ଦାମ୍ ଶବ୍ଦ । କନେଷ୍ଟବଲ ବଡ଼ ପାଟିରେ କହିଲା—"କିଏ ତୁମେ ?"

ମାରଭେଲ୍‌ ଚୁପ୍ ଚାପ୍ କହିଲା—"ହଜୁର, ତାକୁ କିଛି କହନ୍ତୁ ନାହିଁ । ଖୁନ୍ କରିଦେବ ସାଙ୍ଗେ ସାଙ୍ଗେ । ତା ହାତରେ ମସ୍ତବଡ ଶାଣିତ ଛୁରୀ । ମୋତେ ଲୁଚାଇ ରଖନ୍ତୁ ।"

ହୋଟେଲର ମଦ ବିକେତା କାଉଣ୍ଟରର ଦରଜା ଖୋଲି ମାରଭେଲକୁ ଭିତରକୁ ଟାଣିନେଲା । ବାହାରେ ସେତେବେଳେ ଶୁଣାଯାଉଥିଲା ହୁଙ୍କାର ଶବ୍ଦ—ଖୋଲ, ଖୋଲ, ଖୋଲ ଏକ୍ଷଣି !

କଳାଦାଢିବାଲା ଲୋକଟି ଦାନ୍ତ ଚିପି ଚିପି କହିଲା, "ଏଇ ତାହେଲେ ଅଦୃଶ୍ୟ ମାନବ ? ଅଦୃଶ୍ୟକୁ ଦର୍ଶନ କରିବା ସୁଯୋଗ ଛାଡ଼ିବା ଉଚିତ ହେବନି ଆମମାନଙ୍କର ।"

ଝରକାର କାଚଗୁଡ଼ାକ ହଠାତ୍ ମଡ଼ମଡ଼ ଶବ୍ଦକରି ଭାଙ୍ଗିଗଲା । ରାସ୍ତାରେ ଶୁଣାଗଲା ଅନେକ ଲୋକଙ୍କର ଦୌଡାଦୌଡ଼ି ଓ ଚିତ୍କାର-ତାପରେ ସବୁ ନୀରବ ହୋଇଗଲା । କନେଷ୍ଟବଲ କହିଲା -- ଦରଜା ଖୋଲିଦେଲେ ତାକୁ ଆଉ ରୋକି ହେବ ନାହିଁ—ସେ ନିଶ୍ଚୟ ଭିତରକୁ ପଶିଯିବ ।

"ଦରଜା ଖୋଲନା କହୁଛି ।"—ମୃଦୁ ପ୍ରତିବାଦ ଜଣାଇଲା ରେଗ ପଡିଲା କୋଚମ୍ୟାନ୍ ।

କଳା ଦାଢିବାଲା କହୁଛି—"ଛିଟିକିଣିଟା ଖୋଲିଦଅ ହେ, ତାପରେ ଆସିଲେ ଦେଖିବା ।"—କହିସାରି ସେ ସମସ୍ତଙ୍କୁ ଦେଖାଇଦେଲା ତା ରିଭଲଭରଟା ।

ଅନ୍ୟ କେହି ଆଗେଇଲେନାହିଁ ଦରଜା ଛିଟିକିଣି ଖୋଲିବା ପାଇଁ । ଦାଢିବାଲା ନିଜେ ଆଗକୁ ଯାଇ ନିଜ ବାଁ ହାତରେ ଖୋଲି

ଦେଲା ଛୁଟିକଣିଟା । ତାହାଣହାତରେ ତାର ଥିଲା ରିଭଲଭର୍ । ଦରଜା ଖୋଲିଗଲା । ହୋଟେଲର ମଦବହେଚା; ଜେଗା କୋଚମ୍ୟାନ, କନେଷ୍ଟବଳ—ସମସ୍ତେ ଛୁଟିଆହୋଇ ଜନ୍ମୁକ୍ତ ଦରଜା ଆଡ଼େ ଗୁହିଁରହିଲେ ଅପଲକ ଆଖିରେ ।

ଦାଢ଼ିବାଲା ହାତରେ ଗୁଳଭରା ରିଭଲଭର ।

କିନ୍ତୁ କହ ? କଏ ତ ଆସୁନାହିଁ ଘର ଭିତରକୁ !

ହଠାତ୍ କାଉଣ୍ଟରର ଦରଜା କାହାର ଏକ ପ୍ରଚଣ୍ଡ ପଦାଘାତରେ ଖୋଲିଗଲା ଏବଂ ତା ସଙ୍ଗେ ସଙ୍ଗେ ଘର ଭିତରୁ ଭୟାର୍ତ୍ତ ଚିତ୍କାର ଶୁଣାଗଲା ମାରଭେଲର । କାଉଣ୍ଟର ଉପରେ ଲମ୍ଫଦେଇ ଆରପଟକୁ ଗୁଲିଗଲେ ବହେଚା, ଦାଢ଼ିବାଲା ଏବଂ କନେଷ୍ଟବଳ । କୋଚମ୍ୟାନଟା ଯେଉଁଠାରେ ଥିଲା ସେଠାରେ ରହିକମ୍ପିବାକୁ ଲଗିଲା । ଦାଢ଼ିବାଲା ହାତରେ ଥିବା ରିଭଲ୍‌ଭରଟା ଗର୍ଜିଉଠିଲା । ଗୁଳିଟା ବାଜିଗଲା କାନ୍ଥରେ ଥିବା ଖଣ୍ଡିଏ ଦର୍ପଣ ଉପରେ ଓ ସଙ୍ଗେ ସଙ୍ଗେ ଦର୍ପଣର କାଚ ଖଣ୍ଡ ଖଣ୍ଡ ହୋଇ ତଳେ ଖସିପଡ଼ିଲା ଝଣ ଝଣ ଶବ୍ଦ କରି ।

ଅଦୃଶ୍ୟ ମାନବ ମାରଭେଲକୁ ଟାଣି ଟାଣି ନେଇଗଲା କାଉଣ୍ଟର ବାହାରକୁ । ସେ ଯିବାକୁ ଇଚ୍ଛା କରୁନ—କିନ୍ତୁ ଅଦୃଶ୍ୟ ଆତତାୟୀ ତାକୁ ଛାଡ଼ିବାକୁ ନାରାଜ । ଦାଢ଼ିବାଲା ଆଉ ଗୁଳି ଚଳାଇବା ପାଇଁ ସାହସ କଲାନାହିଁ, କାରଣ ତାହା ଆତତାୟୀ ଦେହରେ ନବାଜି ମାର୍‌ଭେଲ୍ ଦେହରେ ବାଜି ଯିବାର ବେଶି ସମ୍ଭାବନା ଥିଲା ।

ସ୍ଥାନୀୟ କନେଷ୍ଟବଳଟି ଏଥର ଦୌଡ଼ିଗଲା ଦରଜା ଆଡ଼କୁ ମାର୍‌ଭେଲ ଥିବାସ୍ଥାନକୁ । ମାର୍‌ଭେଲ୍ ଚିତ୍କାର କରୁଥିଲା, "ରକ୍ଷା କର, ରକ୍ଷାକର. ମୋତେ ଅଦୃଶ୍ୟ ମାନବ ଟାଣି ନେଇ ଯାଉଛି ।

କନେଷ୍ଟବଲ ଜାଣିଲା, ମାର୍‌ଭେଲ ନିକଟରେ ଅଦୃଶ୍ୟ ମାନବ ଛିଡ଼ା ହୋଇଛି । ସେ ମାର୍‌ଭେଲର ଆଖପାଖ ସ୍ଥାନ ଅଣ୍ଡାଳିଲା କିଛି ସମୟ ପାଇଁ । ତାପରେ ଚିତ୍କାର କଲା, "ଧରିଛି ଧରିଛି ।"

ମାର୍‌ଭେଲ ମୁକ୍ତି ପାଇଗଲା କ୍ଷଣକ ପାଇଁ; କାରଣ ତା'ର ଆତତାୟୀ ସେତେବେଳେ କନେଷ୍ଟବଲର ଆକ୍ରମଣରୁ ଆତ୍ମରକ୍ଷା କରିବା ପାଇଁ ବ୍ୟସ୍ତ । ତାର ଅଦୃଶ୍ୟ ଶରୀର ଉଦ୍ଦେଶ୍ୟରେ ଲାଠି ଓ ଘୁଷି ବର୍ଷଣ ହେଉଥିଲା ଅବିଶ୍ରାନ୍ତ ଭାବରେ । କେଉଁଠା ବାଜୁଥିଲା ଆଉ କେଉଁଠା ହୁଏତ ବାଜୁନଥିଲା । ଯାହା ତା ଦେହରେ ବାଜୁଥିଲା ତାହା ଅତି ପ୍ରଚଣ୍ଡ ବେଗରେ ବାଜୁଥିଲା । ବେଳେବେଳେ ଶୂନ୍ୟରୁ କ୍ରନ୍ଦନ ଶୁଣାଯାଉଥିଲା । ଶେଷରେ ଅଦୃଶ୍ୟ ମାନବ ସମସ୍ତଙ୍କୁ କାବୁ କରିଦେଇ ଖସିଚାଲିଗଲା ସେହି ଘରଭିତରୁ—ପ୍ରତ୍ୟେକଙ୍କୁ ଗୋଟିଏ ଦୁଇଟି କରି ଘୁଷି ଦେଇ ।

କେଉଁଆଡ଼େ ଗଲା ? କେଉଁଆଡ଼େ ଗଲା ? ଅଦୃଶ୍ୟ ମାନବ କେଉଁଆଡ଼େ ଗଲା ?—ଏହି ଚିତ୍କାର ଶୁଣାଗଲା ଘର ଭିତରେ ।

କନେଷ୍ଟବଲ ଏବଂ ଅଦୃଶ୍ୟ ମାନବ ମରାମରିରେ ବ୍ୟସ୍ତ ଥିବାବେଳେ ମାର୍‌ଭେଲ ଚାଲିଗଲା ବାହାରକୁ । ସେ ବାହାରକୁ ଚାଲିଯିବା ଦେଖି ଅଦୃଶ୍ୟ ମାନବ ଦୌଡ଼ିଲା ତା ଶିକାର ପଛରେ ଓ ତାକୁ ପୁଣି ଧରିନେଲା । ଫେର୍ ଶୁଣାଗଲା ମାର୍‌ଭେଲର ଚିତ୍କାର । ସେହି ଚିତ୍କାର ଶୁଣି ମାର୍‌ଭେଲ ଆଡ଼କୁ ଦୌଡ଼ିଲେ କନେଷ୍ଟବଲ, ଦାଢ଼ିବାଲା, ମଦ ବିକାଳିତା ଏବଂ ନବାଗତ ଆଉ କେତେ ଜଣ ଲୋକ । ମାର୍‌ଭେଲ ପଡ଼ିଯାଇଛି ଦରଜା ନିକଟରେ ଜ୍ଞାନଶୂନ୍ୟ ହୋଇ । ଅଦୃଶ୍ୟମାନବ ଦେଖା ଯାଉ ନଥିଲେ ମଧ୍ୟ ଜଣାଯାଉଥିଲା ଯେ ସେ ତାକୁ ବାହାରକୁ ଟାଣିନେବା ପାଇଁ ଚେଷ୍ଟା କରୁଛି । ମାର୍‌ଭେଲ୍‌ର ଖାତଟା' ଯେତେବେଳେ

ଉପରକୁ ଉଠିଛି ସେତେବେଳେ ସ୍ପଷ୍ଟ ଜଣାପଡୁଛି ଯେ ତା ହାତ ଧରି ବାହାରକୁ ଟାଣୁଛି ସେହି ଶୟତାନ । ଏହି ଦୃଶ୍ୟ ଦେଖି ଦାଢ଼ିବାଲା ଚଳାଇଲା ଗୁଳି ଅଦୃଶ୍ୟ ମାନବ ଆଡ଼କୁ ଆନ୍ଦାଜ କରି । କିନ୍ତୁ କି ଧୂର୍ତ୍ତ ସେହି ଅଦୃଶ୍ୟ ମାନବ—ଦାଢ଼ିବାଲା ରିଭଲଭର ତା ଆଡ଼କୁ ଲକ୍ଷ୍ୟ କରିବା ଦେଖି ସଙ୍ଗେ ସଙ୍ଗେ ସେ ମାରଭେଲଙ୍କୁ ଛାଡ଼ିଦେଇ ନିଃଶବ୍ଦରେ ଚାଲିଗଲା ସେହି ଘରୁ । ରିଭଲଭରର ଗୁଳି ଦ୍ୱାର ପାର ହୋଇ ଯାଇ ବାଜିଲା ବଗିଚାରେ ଥିବା ଗୋଟିଏ ଗଛରେ ।

"ଆରେ, ଆଉଥରେ ଖସିଗଲାରେ ।"—କହିଉଠିଲେ ସମସ୍ତେ ସମସ୍ୱରରେ । ରିଭଲଭରରେ ଆଉ ଗୁଳି ନଥିଲା । ଦାଢ଼ିବାଲା କହିଉଠିଲା—"ଏଥର ଖୋଜି ଦେଖିବା ଲୋକଟା ଆଘାତ ପାଇଛି କି ନାହିଁ । ଗୁଳି ବାଜିଥିଲେ ତା ଦେହରେ ଅଣ୍ଟା ତଳକୁ ବାଜିଥିବ ।"

ସମସ୍ତେ ଚାଲିଲେ ବଗିଚା ଭିତରକୁ । ବଗିଚା ଭିତର ଏବଂ ବାହାରର ରାସ୍ତାଟା ତନ୍ନତନ୍ନ କରି ଖୋଜିଲେ—କିନ୍ତୁ କେଉଁଠାରେ ହେଲେ କାହାର ଆହତ ଦେହ ପାଇଲେ ନାହିଁ । ତେବେ ସେମାନେ ଦେଖିଲେ ଧୂଳିରେ ପଡ଼ିଥିବା ବୁନ୍ଦା ବୁନ୍ଦା ତାଜା ରକ୍ତ କେତେ ଟୋପା । ଅଦୃଶ୍ୟମାନବ ଆହତ ହୋଇଛି ତାହାହେଲେ—ଏହି ସମ୍ଭାବନାରେ ସମସ୍ତେ ଆନନ୍ଦିତହେଲେ ।

ଚେତନାହୀନ ମାର୍‌ଭେଲ୍‌କୁ ଥାନାକୁ ନେଇ ଅଣାଗଲା । ଜ୍ଞାନଲାଭ କରିବା ପରେ ଥାନା ଅଫିସର ନିକଟରେ ଅର୍ଜି ପେସ୍‌କଲା—ସେ ନିର୍ଦ୍ଦୋଷ ହେଲେ ମଧ୍ୟ ମୁକ୍ତି ଚାହେଁ ନାହିଁ । ତାର ଏକମାତ୍ର ପ୍ରାର୍ଥନା ଏହି ଯେ ଥାନାର ସବୁଠାରୁ ସୁଦୃଢ଼ କଏଦୀ

ଘରେ ଡବଲ ତାଲା ବନ୍ଦ କରି ତାକୁ ରଖାଯାଉ, ଯେତେଦିନ ପର୍ଯ୍ୟନ୍ତ ଅଦୃଶ୍ୟ ମାନବ ଧରାପଡ଼ିନ ବା ତାର ମୃତ୍ୟୁ ହୋଇନ ।

× × ×

ବାହାରେ ଏତେ ଗୋଳମାଳ ଘଟିଗଲାଣି, ତଥାପି ଡାକ୍ତର କେମ୍ପ୍ ତାହା ଜାଣନ୍ତି ନାହିଁ । ସେ ନିବିଷ୍ଟ ଚିତ୍ତରେ ଲେଖାପଢ଼ା କରୁଥିଲେ ତାଙ୍କ ବୈଠକଖାନାରେ ବସି । ଏହି ସମୟରେ ବାହାରେ କଲିଂବେଲ୍ ବାଜିବା ଶୁଣାଗଲା ଓ ତା ପରେ ପରେ ଦ୍ୱାର ଖୋଲିବା ଶବ୍ଦ । ତାଙ୍କ ମନରେ ଜାତ ହେଲା ଉତ୍କଣ୍ଠା । ସେ କଲମଟା ଉପରକୁ ଟେକି ଧରି ବସିରହିଲେ ଘଟଣାଟା ଜାଣିବା ପାଇଁ । ତାପରେ ତାଙ୍କର ଚାକରାଣୀକୁ ଡକାଇ ପଚାରିଲେ—"କିଏ ଦୁଆର ଖୋଲିଲା ?"

ଚାକରାଣୀ ଜବାବ ଦେଲା, "କଲିଂ ବେଲ୍‌ର ଆବାଜ ଶୁଣି ମୁଁ କବାଟ ଖୋଲିଦେଲି କାଳେ କିଏ ଆପଣଙ୍କୁ ଦେଖା କରିବାକୁ ଆସିଥିବ ଭାବି; କିନ୍ତୁ କାହାକୁ ଦେଖିବାକୁ ପାଇଲି ନାହିଁ । ତେଣୁ ଦ୍ୱାର ବନ୍ଦକରି ଶୋଇବାକୁ ଚାଲିଗଲି ।"

ଚାକରାଣୀଠାରୁ ଏହା ଶୁଣିସାରି ସେ ମନ ସ୍ଥିର କରି ପୁଣି କାଗଜ କଲମ ନେଇ ଲେଖିବାକୁ ଆରମ୍ଭ କଲେ । ଘଣ୍ଟା ପରେ ଘଣ୍ଟା ବିତିଗଲା । ଘର ଭିତରେ କେବଳ ଶୁଣାଯାଉଥିଲା ଘଡ଼ିର ଟିକ୍ ଟିକ୍ ଏବଂ କଲମର ଖର ଖର ଶବ୍ଦ । କାମ ଶେଷ ହେଲା ବେଳକୁ ରାତି ଦୁଇଟା । କାମ ସରିବା ସଙ୍ଗେ ସଙ୍ଗେ ସେ ଚାଲିଲେ ନିଜର ଶୟନକକ୍ଷକୁ ଶୋଇବା ପାଇଁ ।

ଶୟନ କକ୍ଷରେ ପ୍ରବେଶ କରିବା ପରେ ଉପରେ କୋଟ୍‌ଟି ଖୋଲିଦେଇ ଶୋଇବାକୁ ଗଲାବେଳେ ତାଙ୍କୁ ଖୁବ୍ ଶୋଷ ହେଲା । ଗ୍ଲାସେ ପାଣି ପିଇ ତୃଷା ନିବାରଣ କରିବାକୁ ସେ ଭୋଜନ କକ୍ଷକୁ

ଗଲେ । ମାଣି ପିଲସାର ଶୟନ କକ୍ଷକୁ ଫେରିବା ବେଳେ ସେ ପାଟପାଚ୍ଛରେ ଦେଖିଲେ ରକ୍ତର ଦାଗ ! ପରୀକ୍ଷା କରିବା ପରେ ସ୍ପଷ୍ଟ ଭାବରେ ଜଣାଗଲା ଯେ ତାହା ରକ୍ତର ଦାଗ ବ୍ୟତୀତ ଆଉ କିଛି ନୁହେଁ ।

ରକ୍ତର ଦାଗ ? ଏହି ଦାଗ ଆସିଲା କୁଆଡ଼ୁ ? ଚାକର ବା ଚାକରାଣୀ କାହାର ହାତ କଟିଗଲାକି ? ହାତ ଯଦି କଟିଗଲା ତେବେ ତାଙ୍କୁ ଜଣାଇଲେ ନାହିଁ କାହିଁକି ? ଏହିପରି ଭାବି ଭାବି ସେ ନିଜ ଶୟନ କକ୍ଷକୁ ଫେରିବାବେଳେ ଦେଖିଲେ ତାଙ୍କ ଶୟନ କକ୍ଷ ଦରଜାରେ ରକ୍ତର ଦାଗ । ଏହି ଦାଗ ଦେଖି ଚମକି ପଡ଼ିଲେ ସେ । ଏଠାକୁ ଚାକର ଚାକରାଣୀ କିଏ ଆସନ୍ତି ନାହିଁ ତ—ତେବେ ଏହା କାହା ରକ୍ତର ଦାଗ ? ତାପରେ ନିଜ ହାତ ଆଡ଼କୁ ଚାହିଁଲେ ଡାକ୍ତର କେମ୍ପ୍ । ହୁଏତ ଅଜାଣତରେ ତାଙ୍କର ହାତ କଟିଯାଇ ଥାଇପାରେ—କିନ୍ତୁ ତାଙ୍କ ହାତଟି ଅକ୍ଷତ ପରିଷ୍କାର ! ଶୟନକକ୍ଷ ଭିତରେ ପ୍ରବେଶ କରି ତାଙ୍କର ନଜର ପଡ଼ିଲା ବିଛଣା ଉପରେ । ବିଛଣା ଚାଦର ଉପରେ ଟୋପା ଟୋପା ରକ୍ତର ଦାଗ ଓ ଚାଦରରୁ କିଏ ଖଣ୍ଡିଏ ଛିଣ୍ଡାଇ ନେଇଛି । ବିଛଣାର ଗଦିଟା ଟିକିଏ ଦବିଯାଇଥିବା ପରି ଜଣାଗଲା । ଏଥିରୁ ଜଣାପଡୁଥିଲା ଜଣେ କିଏ ବସିଛି ଗଦି ଉପରେ । କିଏ ଗଦି ଉପରେ ବସିଛି ? କେତେବେଳେ ସେ ଘର ଭିତରକୁ ପଶିଲା ? ଏହିପରି ନାନା ରକମର ଭାବନା ଡାକ୍ତର କେମ୍ପଙ୍କ ମନରେ ସ୍ଥାନ ପାଇଲା । ଏତିକିବେଳେ ଘର ଭିତରେ ହଠାତ୍ କିଏ ତାଙ୍କର ନାମ ଧରି ଡାକିଲା ।

ବୈଜ୍ଞାନିକ ସେ, ଭୂତ, ପ୍ରେତ କିଛି ଅଛି ପୃଥିବୀରେ, ତାହା ବିଶ୍ୱାସ କରନ୍ତି ନାହିଁ ମୋଟେ ସେ । ଘରେ କେହି ମନୁଷ୍ୟ ନାହିଁ

ଅଥଚ କପରି ମନୁଷ୍ୟର କଣ୍ଠସ୍ୱର ଶୁଣାଯାଉଛି ଘର ଭିତରେ ?
ଏହା ଅସମ୍ଭବ । ଅସମ୍ଭବ କଥା ସେ ସ୍ୱୀକାର କରିବେ କପରି ?

କିଛି ସମୟ ପରେ ଆଉଥରେ ମନୁଷ୍ୟର କଣ୍ଠସ୍ୱର ଶୁଣାଗଲା ତାଙ୍କ ଡ୍ରେସିଂ ଟେବୁଲ ନିକଟରେ । ସେ ଦୌଡ଼ିଗଲେ ସେହି ଡ୍ରେସିଂ ଟେବୁଲ ନିକଟକୁ । ସେଠାରେ ଦେଖିଲେ ଗୋଟିଏ ଅପ୍ରତ୍ୟାଶିତ ଜିନିଷ । କେତେଖଣ୍ଡ ବ୍ୟାଣ୍ଡେଜ କନା ରକ୍ତରେ ବୁଡ଼ି ଯାଇଛି । ସେହି କନାଗୁଡ଼ିକ ଘରର ଗୋଟିଏ କଣରୁ ଆଉ ଗୋଟିଏ କଣକୁ ଉଡ଼ୁଛି ପବନରେ ଭୁଲା ଉଡ଼ିଲା ପରି । ଅବାକ୍ ହୋଇ କେମ୍ପ୍ ଚାହିଁ ରହିଲେ ସେହି କନାଖଣ୍ଡ ଗୁଡ଼ିକ ଆଡ଼କୁ । ବ୍ୟାଣ୍ଡେଜ କନା, କିନ୍ତୁ ତା ଭିତରେ ନାହିଁ କୌଣସି ଆହତ ଅଙ୍ଗ-ପ୍ରତ୍ୟଙ୍ଗ । କି ଆଶ୍ଚର୍ଯ୍ୟ । କେମ୍ପ୍ ହାତ ବଢ଼ାଇଲେ ପବନରେ ଉଡ଼ୁଥିବା ସେହି ବ୍ୟାଣ୍ଡେଜକନା ଖଣ୍ଡଗୁଡ଼ିକ ଧରିବା ପାଇଁ; କିନ୍ତୁ ତାଙ୍କର ଗତିରୋଧ ହେଲା ହଠାତ୍ । ଜଣେ କେହି ତାଙ୍କ ସମ୍ମୁଖରେ ଛିଡ଼ାହେଲା ପରି ଜଣାଗଲା ତାଙ୍କୁ ।

"କେମ୍ପ୍ !"—କହିଲା ସେହି କଣ୍ଠସ୍ୱର, "ଭୟ ପାଅନାହିଁ । ମୁଁ ଜଣେ ଅଦୃଶ୍ୟ ମାନବ ।"

କେମ୍ପ୍ ସ୍ତବ୍ଧ । କିଛିକ୍ଷଣ ପାଇଁ ତାଙ୍କ ମୁହଁରୁ କୌଣସି କଥା ବାହାରିଲା ନାହିଁ । ଗୋଟିଏ ନଜରରେ କେବଳ ଚାହିଁ ରହିଥିଲେ ସେ ସେହି ବ୍ୟାଣ୍ଡେଜ ଆଡ଼କୁ । ବିଦ୍ୟୁତ୍ ଚମକ ପରି ସେହି କାହାଣୀ କେମ୍ପ୍‌ଙ୍କ ମୁଣ୍ଡରେ ଝଲସିଗଲା । ସମ୍ବାଦପତ୍ରରେ ସକାଳବେଳା ପଢ଼ିଥିଲେ ସେ ସେହି କାହାଣୀ । ପଢ଼ିବା ସଙ୍ଗେ ସଙ୍ଗେ ତାହା ଗୋଟିଏ ବାଜେ ଗପ ଭାବି ଉପହାସ କରିଥିଲେ କେମ୍ପ, କିନ୍ତୁ ବର୍ତ୍ତମାନ କଣ ଦେଖୁଛନ୍ତି ସେ !

କେମ୍ପ୍ ଅତି ଚତୁର ଲୋକ । ଖୁବ୍ ଭୟ ପାଇବାର, ଏପରିକି ଖୁବ୍ ବିସ୍ମିତ ହେବାର କୌଣସି ଭାବ ପ୍ରକାଶ ପାଇଲାନାହିଁ ତାଙ୍କ ଆଚରଣରେ । ଅଦୃଶ୍ୟ ମାନବକୁ ଲକ୍ଷ୍ୟ କରି କେମ୍ପ କହିଲେ "ତୁମ ଦେହର କୌଣସି ଅଂଶରେ ବ୍ୟାଣ୍ଡେଜ ବନ୍ଧା ଯାଇଛି କି ?" ହଠାତ୍ ଗୋଟିଏ ପାଦ ଆଗେଇଯାଇ ବ୍ୟାଣ୍ଡେଜ ଆଡ଼କୁ ହାତ ବଢ଼ାଇଲେ ଡାକ୍ତର କେମ୍ପ୍ । ଗୋଟିଏ ରକ୍ତମାଂସର ହାତ ସ୍ପର୍ଶ ହେଲା ତାଙ୍କର । ସଙ୍ଗେ ସଙ୍ଗେ ପାଦେ ହଟିଆସିଲେ ସେ । ମୁହଁ ତାଙ୍କର ଫିକାପଡ଼ିଗଲା । ଖୁବ୍ ଖୁବ୍ ଅଦୃଶ୍ୟ ହାତଟି ଚାପି ଧରିଲା କେମ୍ପ୍ଙ୍କ ବାହୁ—"ମୁଣ୍ଡ ଠିକ୍ ରଖ । ତୁମକୁ ଅନୁରୋଧ କରୁଛି ଡାକ୍ତର କେମ୍ପ୍—ମୋର ସାହାଯ୍ୟ ଦରକାର, ନିହାତି ଦରକାର !" କଥା ଶୁଣାଯାଉଛି ଏବଂ ବେଳକୁବେଳ କେମ୍ପ୍ଙ୍କ ବାହୁକୁ ଅଦୃଷ୍ଟ ହସ୍ତ ଅଧିକରୁ ଅଧିକତର ଜୋର୍‌ରେ ଚାପିଧରୁଛି ।

କେମ୍ପ୍ଙ୍କ ମନରେ ରାଗ କୁହୁଳୁଥିଲା । ଶିଡ଼ି ତଳେ ରକ୍ତର ଦାଗ ଆବିଷ୍କାର କରିବା ପରଠାରୁ ସେ ଅଗ୍ନିଶର୍ମା ହୋଇଥିଲେ । ଦୃଷ୍ଟ ହେଉ ଅଦୃଷ୍ଟ ହେଉ, ସେହି ବ୍ୟକ୍ତି ଅନଧିକାରଚର୍ଚ୍ଚା କରି ଅନ୍ୟର ଘର ଭିତରେ ପଶିଛି । ପୁଣି ଗୃହସ୍ୱାମୀଙ୍କ ଉପରେ ବଳ-ପ୍ରୟୋଗ କରୁଛି । ଏହିପରି ବ୍ୟକ୍ତି ସହିତ ଭଦ୍ରତା ପ୍ରଦର୍ଶନ କରିବାର ପ୍ରଶ୍ନ ଉଠେନା । କେମ୍ପ୍ ସବଳେ ଝାଡ଼ିଦେଲେ ନିଜର କନିଠାକୁ; ଉଦ୍ଦେଶ୍ୟ ଅଦୃଶ୍ୟ ମାନବର ହାତଟାକୁ ଦୂରକୁ ଛୁଞ୍ଚି ଦେବା; କିନ୍ତୁ ସେ କେମ୍ପଙ୍କଠାରୁ ଥିଲା ଅଧିକ ବଳବାନ୍ । ସେ ସତର୍କ ମଧ୍ୟ ଥିଲା । କେମ୍ପ୍ ନିଜର ବାହୁ ଝାଡ଼ିଦେବା ସଙ୍ଗେସଙ୍ଗେ ସେ ତାଙ୍କୁ ସଜୋରରେ ଠେଲି ଶୁଆଇଦେଲା ବିଛଣାଉପରେ ଓ ତାପରେ ଚାପି ଧରିଲା ତାଙ୍କର ଗଳା । କେମ୍ପ ଚିତ୍କାର କରିବାପାଇଁ ପାଟି ଖୋଲିବା କ୍ଷଣି ସେ ବିଛଣା ଚଦରର ଗୋଟିଏ ଅଂଶ ଭର୍ତ୍ତି କରି

ଦେଲା ତାଙ୍କ ପାଟି ଭିତରକୁ । କେମ୍ପ୍ ବିଛଣା ଉପରେ ଚୁପ୍‌ହୋଇ ପଡ଼ିରହିଲେ । ତାଙ୍କ ପାଟିଟା ସିନା କାମ କରୁନଥିଲା, ତାଙ୍କ ହାତ ଦୁଇଟା ଠିକ୍ କାମ କରୁଥିଲା । ସେ ଅଦୃଶ୍ୟ ଶତ୍ରୁର ଦେହରେ ଲଗାଇଦେଲେ ଦୁଇ ତିନଟା ଘୁଷି ଓ ବିଧାପୁଡ଼ା ।

"ଆରେ କେମ୍ପ୍, ତୁମେ ବୋକା ନା କ'ଣ ? ଚୁପ୍ ରହି ଶୁଣ ମୋ କଥା ଆଗ ! ମରାମରି କରିବା ମତଲବ ଛାଡ଼ । ମୁଁ ଯଦି ରାଗିବି ତେବେ ତୁମକୁ ଖୁନ୍ ମଧ୍ୟ କରିଦେଇ ପାରିବି । ମୁଁ ସାଙ୍ଘାତିକ ଆହତ ହୋଇଛି, ମୋର ପ୍ରାଣ ରକ୍ଷାକର ।"

କେମ୍ପ୍ ହୋଇଗଲେ ନିଶ୍ଚଳ; ନିସ୍ତବ୍ଧ । ମାରିବ ରହି ସେହି ଲୋକଟାର କାହାଣୀ ଶୁଣିବା ଉଚିତ ବୋଲି ସେ ଭାବିଲେ । ଅଦୃଶ୍ୟ ମାନବ ତାଙ୍କ ମୁହଁରୁ ହାତର ବାନ୍ଧ ଆଉ କାଢ଼ିଦେବା ସଙ୍ଗେ ସଙ୍ଗେ ଶୁଣାଇଦେଲା—"ଚିତ୍କାର ଯଦି କର ତେବେ ମୁଣ୍ଡଟିକୁ ଛେଚି କରିଦେବି । ଶୁଣ ଏଥର, ମୁଁ ବର୍ତ୍ତମାନ ତୁମ ସାହାଯ୍ୟପ୍ରାର୍ଥୀ । ଶୁଣ କେମ୍ପ୍, ଗ୍ରିଫିନକୁ ମନେରଖିଛ ? ୟୁନିଭରସିଟି କଲେଜର ଗ୍ରିଫିନ ?"

କେମ୍ପ୍ କହିଲେ, "ଆରେ ଛାଡ଼ିଦିଅ ମତେ—ବଡ଼ କଷ୍ଟ ହେଉଛି । ମୁଁ ବସିଯାଏ ବିଛଣା ଉପରେ—ତା ପରେ ଶୁଣିବି ।"

କେମ୍ପ୍ ବିଛଣା ଉପରେ ବସିଗଲା ପରେ ଅଦୃଶ୍ୟ ମାନବ କହିଲା—"ମୁଁ ୟୁନିଭରସିଟି କଲେଜର ସେହି ଗ୍ରିଫିନ । ନିଜର ଚେଷ୍ଟାରେ ମୁଁ ନିଜକୁ ଅଦୃଶ୍ୟ କରିଦେଇଛି । ଅନ୍ୟ ମନୁଷ୍ୟ ପରି ମନୁଷ୍ୟଟିଏ ମୁଁ—ତଫାତ୍ କେବଳ ଏତିକି ଯେ ମୁଁ ଅଦୃଶ୍ୟ ।"

ଗ୍ରି ଫି-ନ୍ ?—କେମ୍ପ୍ ମନେପକାଇବାକୁ ଚେଷ୍ଟାକଲେ । "ଗ୍ରିଫିନ ।"—ପୁନରାବୃତ୍ତି କଲା ଅଦୃଶ୍ୟ ମାନବ—"ତୁମର

ସହପାଠୀ । ଛଅଫୁଟ ଲମ୍ବା, ମୋଟା ମଧ୍ୟ ସେହି ଅନୁପାତରେ । ମୁହଁର ରଙ୍ଗ ଗୋଲାପି । ରସାୟନ ବିଜ୍ଞାନରେ ମେଡ଼ାଲ ପାଇଥିଲି ସିଏ ।”

କେମ୍ପ୍ ସେପରି ଚଳାରେ ବୁଡିଗଲେ କିଛି ସମୟ ପାଇଁ । ତାପରେ କହିଲେ—“ଅସମ୍ଭବ ପରି ଲାଗୁଛି ତୁମ କଥା । ମନୁଷ୍ୟ ଅଦୃଶ୍ୟ ହୁଏ କୌଣସି ଯାଦୁତାମା ମନ୍ତ୍ରରେ ?”

“ଯାଦୁତାମା କିଛି ନାହିଁ ଏଥିରେ । ଏକ ବୈଜ୍ଞାନିକ ପଦ୍ଧତି ଅନୁସରଣ କଲେ ସମସ୍ତେ ଅଦୃଶ୍ୟ ହୋଇପାରିବେ । ଚେଷ୍ଟାକଲେ ତୁମେ ମଧ୍ୟ ଅଦୃଶ୍ୟ ହୋଇପାରିବ । ଛାଡ଼ ସେ କଥା । ଭାରି ଭୋକ ଲାଗୁଛି । ମୋତେ କିଛି ଖାଇବାକୁ ଦେଇପାରିବ ?”

କେମ୍ପ୍ ଦୃଷ୍ଟିରହିଲେ ବ୍ୟାଣ୍ଡେଜଟା ଆଡକୁ ବିସ୍ମୟରେ । ଧୀରେ ଧୀରେ ସେଇଟା ଘରର ଗୋଟିଏ କଣରେ ଥିବା ବେତ-ଚଉକିଟିଏ ଟାଣିଆଣି ଥୋଇଦେଲା କେମ୍ପଙ୍କ ବିଛଣା ନିକଟରେ । ତାପରେ ଲଥକିନ ବସିପଡ଼ିଲା ସେହି ଚୌକିଟା ଉପରେ । ବସିବା ସମୟରେ ଚୌକିଟା ମଚ ମଚ କରିବା ସ୍ପଷ୍ଟଭାବରେ ଶୁଣିପାରିଲେ କେମ୍ପ୍ । ଅଦୃଶ୍ୟମାନବ କହିଲା; “ଟିକିଏ ହୁଇସ୍କି ଦେବ କି ? ମୁଁ ଦପ ମରିଯାଉଛି !”

କେମ୍ପ୍ କହିଲେ! “ମରିଯାଉଛ ? ତୁମ ହାତ ପାଦରେ ଯେଉଁ ଶକ୍ତି ଦେଖିଲି, ସେଥିରୁ ତୁମର ମରଣ ଆସନ୍ନ ବୋଲି ମନେକରି ପାରୁନ । ହୁଇସ୍କି ଆଣିବାକୁ ହେଲେ ତଳକୁ ଯିବାକୁ ହେବ । ଫେରିଆସିଲେ ତୁମ ସହିତ ଧକ୍କା ଖାଇବି ନାହିଁ ତ ?”

“ଧକ୍କା ଖାଇବାର ସମ୍ଭାବନା ଅବଶ୍ୟ ନାହିଁ । କାରଣ ମୁଁ ଦେଖା ନ ଗଲେ ମଧ୍ୟ ମୋର ଚଷମା ଖଣ୍ଡିକ ତ ତୁମେ ଦେଖି ପାରୁଛ ।”

କେମ୍ପ୍ ଉଠି ତଳକୁ ଗଲେ ଏବଂ ଦୁଇଷ୍ଟି ସହିତ କିଛି ଥଣ୍ଡା କଟଲେଟ୍ ନେଇଆସିଲେ ଅବାଞ୍ଛିତ ଅତିଥିର ଆପ୍ୟାୟନ ପାଇଁ ! ତା ପରେ ସେ ଯାହା ଦେଖିଲେ ତାହା ଅଦ୍ଭୁତ ଓ ଅସ୍ୱାଭାବିକ । ଖାଦ୍ୟଦ୍ରବ୍ୟ ଭିତରେ ଷ୍ଟ୍ରିପ୍ଟ ପଶିଯାଉଛି । ସେହି ଷ୍ଟ୍ରିପ୍ଟ ଶୂନ୍ୟରେ ଉପରକୁ ଉଠିଯାଉଛି । ତାପରେ ଷ୍ଟ୍ରିପ୍ଟରୁ ଖାଦ୍ୟଦ୍ରବ୍ୟ ଉଭେଇ ଯାଉଛି । ପୁନରପି ଖାଲି ଷ୍ଟ୍ରିପ୍ଟଟି ଖାଦ୍ୟଦ୍ରବ୍ୟ ଭିତରେ ପଶି ଖାଦ୍ୟ ଉଠାଇ ନେଉଛି ଶୂନ୍ୟକୁ । ତା ପରେ ଖାଦ୍ୟଦ୍ରବ୍ୟ ଉଭେଇଯାଉଛି ।

କିଛି ସମୟ ଭିତରେ କଟଲେଟ୍‌ତକ ଉଭେଇଗଲା । ତା ପରେ ଟଫିନ୍ ଉଦ୍ଦେଶ୍ୟରେ ଡାକ୍ତର କେମ୍ପ୍ କହିଲେ, "କ'ଣ କରିବ ଗ୍ରିଫିନ୍ ! ରନ୍ଧାଘରେ ଆଜି କିଛି ପାଇଲି ନାହିଁ । ତୁମର ତୃପ୍ତି ହେଲାନି ବୋଧହୁଏ !"

"ପ୍ରକୃତରେ ହେଲାନାହିଁ ।"—କହିଲା ଅଦୃଶ୍ୟ ମାନବ । "ତେବେ ତୁମେ ଆଉ କ'ଣ କରିପାରିବ ? ଯେଉଁ ଲୋକ ଦୁଇଦିନ ହେଲା ଉପାସରେ ରହିଛି ଟିକିଏ ଜଳ ମଧ୍ୟ ସ୍ପର୍ଶ ନ କରି—ତାର କ୍ଷୁଧା ନିବାରଣ କରିବା କ'ଣ ସହଜ ? ତେବେ ତୁମେ ଯାହା ଉପକାର କରିଛ ତାହା ଭୁଲିବାର ନୁହେଁ । ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲି ଯେ ମୁଁ ତୁମ ଦ୍ୱାରସ୍ଥ ହେବି ବୋଲି, କିନ୍ତୁ ଅଦୃଷ୍ଟାଚକ୍ର ମୋତେ ତୁମ ନିକଟକୁ ଆସିବାକୁ ବାଧ୍ୟ କଲା । ଜଲି କ୍ରିକେଟର୍ସ-ଠାରେ ମାଡ଼ଖାଇ ଓ ସାଙ୍ଘାତିକ ଆହତ ହୋଇ ଏହି ଘର ଭିତରକୁ ପଶିଆସିଛି ।"

"ଆହତ ହେଲ କିପରି—ଗୁଳି ନା ଛୁରିରେ ? ଗୁଳିର ଶବ୍ଦ ଏହି ଜଲି କ୍ରିକେଟର୍ସଆଡ଼ୁ ଶୁଣିଲାପରି ମୋର ମନେହେଉଛି ।"

“ହଁ, ହଁ, ଗୁଳିର ଚୋଟ ଲାଗିଛି । ହୋଇଛି କ'ଣ ଜାଣ—ଗୋଟିଏ ସାହାଯ୍ୟକାରୀ ଜୁଟିଥିଲା ମୋ ନିକଟରେ । ତା ନିକଟରେ ରଖିଥିଲି ପ୍ରଚୁର ଅର୍ଥ ଏବଂ ତିନିଖଣ୍ଡ ମୂଲ୍ୟବାନ୍ ବହି— ବହି ନ କହି ଡାଏରୀ କହିଲେ ଠିକ୍ ହେବ । ମୋର ସମସ୍ତ ଗବେଷଣାର ଫଳ, ସମସ୍ତ ଆବିଷ୍କାରର ବିଶଦ ବିବରଣୀ ଦୈନନ୍ଦିନ ଟିପ୍ପଣୀ ରୂପେ ସେଥିରେ ଲେଖାଅଛି । ଦୁର୍ଭାଗ୍ୟର କି ଯେ ଦୁର୍ବୁଦ୍ଧି ହେଲା ସେହି ଡାଇରୀ ଓ ନୋଟ୍ ବହି ଧରି ଲୋକଟା ହେଲା ଚମ୍ପଟ୍ । ସଙ୍ଗେ ସଙ୍ଗେ ମୁଁ ତା ପଛରେ ଦୌଡ଼ିଲି ।”

“ଧରିପାରିଲ ନି ?”—ପ୍ରଶ୍ନ କଲେ କେମ୍ପ ଅସ୍ୱାଭାବିକ ଭାବରେ

“ନିଶ୍ଚୟ ଧରିପାରିଥାନ୍ତି—ଯଦି ଅନ୍ୟଜଣେ ଲୋକ ମତେ ବାଧା ଦେଇ ନ ଥାନ୍ତା । ମୁଁ ଧରି ପକାଇଲି ସେହି ବାଧା ସୃଷ୍ଟି କରୁଥିବା ଲୋକଟିକୁ । ସେହି ଲୋକଟି ଏତେ ଜୋର୍‌ରେ ଚିତ୍କାର କଲା ଯେ ବହୁ ଲୋକ ସଙ୍ଗେ ସଙ୍ଗେ ସେଠି ଜମା ହୋଇଗଲେ । ମୁଁ ବାଧ୍ୟ ହୋଇ ଦୌଡ଼ି ପଳାଇଲି ଜୀବନ ବିକଳରେ । ମୋ ଉପରେ ଚାଲିଲା ଗୁଳି । ଶେଷରେ ମୋତେ ଗୁଳି ଚୋଟ ଖାଇବାକୁ ହେଲା । ଦେଖିଲ ତ ଲୋକଙ୍କ ବିଚାର ! ମୋର ଟଙ୍କା ଚୋରିକରି ପଳାଉଛି ମାର୍ଭେଲ୍, ଅଥଚ ଲୋକେ ସାହାଯ୍ୟ କରୁଛନ୍ତି ମାର୍ଭେଲକୁ, କିନ୍ତୁ ମୋ ଉପରେ କେତେବେଳେ ଲାଠି ଚଳାଉଛନ୍ତି ତ ଆଉ କେତେବେଳେ ଗୁଳି ଚଳାଉଛନ୍ତି ।”

କେମ୍ପ୍ କହିଲେ, “ତୁମେ ଗୁଳି ଚଳାଇଲ ନାହିଁ ? ଖୁନ୍ କରି ଦେଲନି ସେମାନଙ୍କୁ ?” “ମୁଁ କପରି ଗୁଳି ଚଳାଇବି ? ମୋର କଣ ରିଭଲଭର୍ ଅଛି ? ତେବେ ଖୁନ୍...ନାଁ ତାକୁ ଖୁନ୍ କୁହାଯାଇ ପାରିବନି । ଆଇପିଂରେ କନେଷ୍ଟବଲଟା ମରି ପଡ଼ିଗଲା ସତ, କିନ୍ତୁ ମରିବା ପୂର୍ବରୁ ମୋ ସହିତ ଏତେ ଜୋର୍‌ରେ କୁସ୍ତି କଲା ଯେ, ମୁଁ

ଏକଦମ୍ କ୍ଳାନ୍ତ ହୋଇପଡ଼ିଲା । ସେ ନ ମରିଥିଲେ ହୁଏତ ମୁଁ ମରିଯାଇଥାନ୍ତି । ତାକୁ ଖୁନ୍ କୁହାଯାଇ ନପାରେ କୌଣସିମତେ ।”

ତା ପରେ କେମ୍ପ ଦେଖିବାକୁ ପାଇଲେ ମୁଣ୍ଡହୀନ ଗୋଟିଏ ସାର୍ଟର ହାତଠାରୁ ଟିକିଏ ଦୂରରେ ଶୂନ୍ୟରେ ଗୋଟିଏ ଗିଲାସ ହୁଇସ୍କି । ଧୀରେ ଧୀରେ ଦେହ କମ୍ପିଉଠିଲା କେମ୍ପଙ୍କର । ଭୂତର ଏହିପରି କାଣ୍ଡକାରଖାନା ସେ କ’ଣ କେବେ ଦେଖିଛନ୍ତି ?

ତଳକୁ ଓହ୍ଲାଇବାକୁ ଲାଗିଲେ କେମ୍ପ । ରନ୍ଧାଘରେ ଆଉ ଟିକିଏ ହେଲେ ଖାଦ୍ୟଦ୍ରବ୍ୟ ନାହିଁ—ତେବେ ସେ ତଳକୁ ଓହ୍ଲାଉଛନ୍ତି କାହିଁକି ? ଯାଉଛନ୍ତି ତଳେ କିଛି ଚିନ୍ତା କରିବା ଉଦ୍ଦେଶ୍ୟରେ । ସେ ଭାବୁଛନ୍ତି ବର୍ତ୍ତମାନ କରଣୀୟ କଣ ? ଖୁଆଇ ପିଆଇ ତାକୁ ବନ୍ଧୁଭାବେ ରାତିଟା ଏଠାରେ ରଖି ସକାଳୁ ବିଦାୟ ଦେବା ? ଅନାୟାସରେ ତାହା କରିଯାଇପାରିଥାନ୍ତା ଯଦି ତାର ଆହତ ହେବାର କାରଣ ସେ ଜାଣିନଥାନ୍ତେ । ତାର ପ୍ରଚୁର ଅର୍ଥ ଚୋରି କରିଛି ମାର୍‌ଭେଲ୍, କିନ୍ତୁ ଗ୍ରିଫିନ୍ ପ୍ରଚୁର ଅର୍ଥ ପାଇଲା କେଉଁଠୁ ? ଅର୍ଥ ଆକାଶରୁ ପଡ଼େନ—ଉପାର୍ଜନ କରିବାକୁ ହୁଏ । ଜଣେ ଅଦୃଶ୍ୟ ମାନବ ପକ୍ଷରେ ସତ୍‌ଭାବରେ ଉପାର୍ଜନର ସୁଯୋଗ କେଉଁଠି ? ଟଙ୍କା କମାଇବାକୁ ସେ ନିଶ୍ଚୟ ତସ୍କରବୃତ୍ତିର ଆଶ୍ରୟ ନେଇଛି । ଅଦୃଶ୍ୟ ଗିଏ ତା ପକ୍ଷରେ ବ୍ୟାଙ୍କର କାଉଣ୍ଟରରୁ ମଧ୍ୟ ନୋଟବିଡ଼ା ଝାମ୍ପି ନେଇଆସିବା ସମ୍ଭବ । ଅବଶ୍ୟ ଝାମ୍ପିନେବା ପରେ ତ କୁ ଟିକିଏ ଅସୁବିଧାରେ ପଡ଼ିବାକୁ ହୋଇପାରେ, କାରଣ ଦେହଟା ଅଦୃଶ୍ୟ ହେଲେ ମଧ୍ୟ ହାତର ନୋଟଗୁଡ଼ିକ ଅଦୃଶ୍ୟ ହୋଇ ନ ପାରେ । ଉଡ଼ି ଉଡ଼ି ନୋଟ ଚାଲିଯାଉଥିବା ଦେଖି ସ୍ୱଭାବତଃ ବ୍ୟାଙ୍କର ଲୋକମାନେ

ତା ପିଛୁ ଧରିବେ । ସମ୍ଭବତଃ ସେହି ସଙ୍କଟ ଦୂରକରିବା ଉଦ୍ଦେଶ୍ୟରେ ଗ୍ରିଫିନ ସଂଗ୍ରହ କରିଥିଲା ମାର୍ଭେଲ୍‌କୁ । ସଂକ୍ଷେପରେ କହିବାକୁ ଗଲେ ସେ ଜଣେ ଧ୍ୱଂସ ସମାଜବିରୋଧୀ ବ୍ୟକ୍ତି । ତା କାର୍ଯ୍ୟରେ ବାଧା ପାଇଲେ ସେ ଖୁନ୍ କରିବାକୁ ମଧ୍ୟ ପ୍ରସ୍ତୁତ । ପ୍ରମାଣ ଆଇପିଂର କନେଷ୍ଟବଲର ହତ୍ୟା । ଖବରକାଗଜରୁ ଜଣାଯାଏ ଯେ ସାରା ଦେଶର ପୁଲିସ ଅତି ସତର୍କତାର ସହିତ ବୁଲୁଛି ଅଦୃଶ୍ୟ ମାନବକୁ ଗ୍ରେପ୍ତାର କରିବା ପାଇଁ ।

—ତେବେ ? ସେହି ପ୍ରଶ୍ନ ପୁଣି ଉଠେ, କରଣୀୟ କଣ କେମ୍ପ୍‌ଙ୍କର ?

ଗୋଟିଏ ଟିଣ ବସ୍କୁଟ ହାତରେ ଧରି କେମ୍ପ୍ ଉପର ଘରକୁ ଫେରିଲେ ପ୍ରାୟ ଅଧଘଣ୍ଟା ପରେ । କର୍ତ୍ତବ୍ୟ ବର୍ତ୍ତମାନ ସୁଦ୍ଧା ସେ ସ୍ଥିର କରିପାରି ନାହାନ୍ତି । ତେବେ ଏହା ସତ୍ୟ ଯେ ମନଟା ତାଙ୍କର କ୍ରମେ କ୍ରମେ ବିରକ୍ତ ହୋଇ ଆସୁଛି ଏହି ଅବାଞ୍ଛିତ ଅତିଥି ଉପରେ ।

ଟିଣ ଖୋଲି ଦୁଇ ତିନ ଖଣ୍ଡ ବସ୍କୁଟ ଏକା ସାଥିରେ ପାଟି ଭିତରେ ଭର୍ତ୍ତି କରିବାକୁ ଲାଗିଲା ଗ୍ରିଫିନ । ତାପରେ ଚୋବାଇବାକୁ ଲାଗିଲା ସେଗୁଡ଼ିକ କଡ଼ମଡ଼ କରି । ଅଦୃଶ୍ୟ ଦାନ୍ତର ସେହି କଡ଼ମଡ଼ ଶବ୍ଦ ଅଦ୍ଭୁତ । କେମ୍ପ୍ ଗ୍ରିଫିନକୁ କହିଲେ, "ତୁମର ଗଳ୍ପଟା ଶୁଣାଅ ଯଦି ଆପତ୍ତି ନଥାଏ ?"

"ଆପତ୍ତି ? ତୁମକୁ ମୁଁ ସହକର୍ମୀ କରିନେବି ବୋଲି ଭାବୁଛି । ସବୁ ତଥ୍ୟ ତୁମକୁ ଆଗେ ନ ଶୁଣାଇଲେ ଚଳିବ କିପରି ?"

ସହକର୍ମୀ ? ଜଣେ ବିବେକହୀନ ଖୁନୀର ? ରାଗରେ ଯେପରି ଟକମକ ହୋଇ ଫୁଟି ଉଠିଲା କେମ୍ପଙ୍କର ରକ୍ତ । ତଥାପି ସେ ନୀରବ । କାରଣ କିଛି ସମୟ କଟାଇବାକୁ ହେବ ମଥାଟାକୁ

ସମସ୍ତ ଦେବାକୁ ହେବ ସବୁ ଦିଗରୁ ଭିନ୍ନ ସମ୍ପୂର୍ଣ୍ଣ ସିଦ୍ଧାନ୍ତରେ ପହଞ୍ଚିବା ପାଇଁ ।

ଗ୍ଲାସରୁ ଗୋଟିଏ ଢୋକ ହୁଇସ୍କି ପିଇନେଇ ଗ୍ରିଫିନ୍ ତାର ଜୀବନ କାହାଣୀ କହିଲା ।

"ତୁମ ପରି ମୁଁ ମଧ୍ୟ ଡାକ୍ତର ହେବାର ମତଲବ ନେଇ ବିଶ୍ୱ-ବିଦ୍ୟାଳୟକୁ ଯାଇଥିଲି; କିନ୍ତୁ ମଝିରେ ପଦାର୍ଥ ବିଜ୍ଞାନର ଗବେଷଣା ମୋତେ ଅନ୍ୟ ପଥରେ ନେଇଗଲା । ପଦାର୍ଥ ବିଦ୍ୟା ମଧ୍ୟରେ ସବୁଠାରୁ ମୋତେ ମଜା ଲାଗିଲା ଆଲୋକ ରହସ୍ୟ । ତୁମେ ନିଜେ ବିଜ୍ଞାନୀ ମନୁଷ୍ୟ—ସଂକ୍ଷେପରେ ଆଭାଷ ଦେଲେ ଭିତର କଥା ବୁଝି ପାରିବ ଅନେକ ପରିମାଣରେ । ସୂର୍ଯ୍ୟାଲୋକର ରଙ୍ଗ ସାତଟା, ଅଥଚ ସେହି ସୂର୍ଯ୍ୟାଲୋକ ଭିତରେ ଗୋଟିଏ ଗୋଟିଏ ବିଶିଷ୍ଟ ରଙ୍ଗ—କେଉଁଟା ଲାଲ, କେଉଁଟା ନୀଳ, କେଉଁଟା ସବୁଜ ।

ଅର୍ଥାତ୍ ଯେଉଁଟା ଲାଲ, ସେଥିରେ ସୂର୍ଯ୍ୟାଲୋକର ସାତଟା ରଙ୍ଗ ମଧ୍ୟରୁ ଲାଲ୍‌ଛଡ଼ା ଅନ୍ୟ ଛଅ ଗୋଟି ରଙ୍ଗ ମିଳାଇଯାଇଛି । ମୁଁ ହଠାତ୍ ଦିନେ ଭାବିଲି—ଛଅଟା ରଙ୍ଗ ଯେଉଁଠାରେ ମିଳାଇ-ଯାଇପାରେ ସାତୋଟି ଯାକ ରଙ୍ଗ କାହିଁକି ମିଳାଇଯାଇ ପାରିବ ନାହିଁ ବସ୍ତୁବିଶେଷ ମଧ୍ୟରେ ? ହୋଇପାରିବନି—କାରଣ ବୋଧହୁଏ କୌଣସି ଜିନିଷ ନାହିଁ ଯାହା ପକ୍ଷରେ ସାତଟା ରଙ୍ଗ ଏକ ସାଥିରେ ହଜମ କରିପାରିବା ସମ୍ଭବ । ନହେଉ; କିନ୍ତୁ ସେହିପରି ଜିନିଷ ତିଆରି କରାଯାଇପାରେ । ସାତଟା ରଙ୍ଗ ଏକା ସାଥିରେ ହଜମ କରିନେବା ଯାହା ପକ୍ଷରେ ସମ୍ଭବ ହେବ, ଏହିପରି ଜିନିଷ ଯଦି ତିଆରି କରିହେବ ପାରିବ ତେବେ ସେ ତ ବୈଜ୍ଞାନିକ ଜଗତର ବୃହତ୍ତମ ଆବିଷ୍କାର, କାରଣ ସେ ଜିନିଷଟା ହେବ ଅଦୃଶ୍ୟ ।

ତୁମକୁ କଣ କହିବ କେମ୍ପ—ଚିନ୍ତାଟା ମୁଣ୍ଡରେ ଢୁକିଲା ପରେ ପରେ ମୁଁ ସଙ୍କଳ୍ପ କଲି ଏହି ଗବେଷଣା କରିବା ପାଇଁ । ତେବେ ଗବେଷଣା ପାଇଁ ଦରକାର ପ୍ରଚୁର ଅର୍ଥ, ଯନ୍ତ୍ରପାତି, ମାଲମସଲା, ପୋଥିପତ୍ର, ସର୍ବୋପରି ଗୋଟିଏ ସୁସଜ୍ଜିତ ଗବେଷଣା-ଗାର । ଏସବୁପାଇଁ ଦରକାର ଅନ୍ତତଃ କୋଡ଼ିଏ ହଜାର ପାଉଣ୍ଡ । ମୋର ତ ନିଜର କୋଡିଏ ପାଉଣ୍ଡ ମଧ୍ୟ ନଥିଲା । ନଥିଲା ମୋ ବାପାଙ୍କର ମଧ୍ୟ । ତେବେ ହଁ, ମୋ ବାପାଙ୍କ ଦାୟିତ୍ୱରେ କୋଡ଼ିଏ କାହିଁକି ପଚାଶ ହଜାର ପାଉଣ୍ଡ ମଧ୍ୟ ରହୁଥିଲା ସମୟେ ସମୟେ । ସେ ଥିଲେ ଗୋଟିଏ ବଡ଼ ଯୌଥ କମ୍ପାନୀର କୋଷାଧ୍ୟକ୍ଷ । ମୁଁ ବାପାଙ୍କ ଉପରୁ ଲୁଚି ସେହି କମ୍ପାନୀର ସେହି ଅର୍ଥ ଚୋରି କଲି ଗୋଟିଏ ସୁଯୋଗ ନେଇ । ଯାହା ଦରକାର ପ୍ରାୟ ସେହି ପରିମାଣ ଅର୍ଥ ପାଇଗଲି । ଚୋରି ଧରାପଡ଼ିଗଲା । ଅପବାଦରୁ ରକ୍ଷା ପାଇବା ପାଇଁ ବାପା ନିଜ ମୁଣ୍ଡର ଖପୁରି ଉଡ଼ାଇଦେଲେ ନିଜ ପିସ୍ତଲ ଗୁଳିରେ । ମୁଁ ସେତେବେଳେ ଗବେଷଣା ନିଶାରେ ଏତେ ଉନ୍ମତ୍ତ ଯେ ବାପାଙ୍କର ଏହି ଅପମୃତ୍ୟୁ ମୋର କୁତକର୍ମ ଫଳରେ ଘଟିଥିଲେ ମଧ୍ୟ ମୋର ମନରେ କୌଣସି ଆଘାତ ଆଣିଲାନାହିଁ । ମୁଁ ବାପାଙ୍କୁ କବର ଦେଇ ଆସିଲି ଏକାନ୍ତ ନିର୍ବିକାର ଭାବରେ ।

ତା'ପରେ ହେଲା କଣ ଜାଣ ? ମୋର ନିରବଚ୍ଛିନ୍ନ ଗବେଷଣାଦ୍ୱାରା ମୋର ସ୍ୱପ୍ନ ସତ୍ୟରେ ପରିଣତ ହେଲା । ମୁଁ ନିଜକୁ ଅଦୃଶ୍ୟ କରିବା ପାଇଁ ସକ୍ଷମ ହେଲି । ଦୀର୍ଘ ଦିନର ସେହି ଅକ୍ଳାନ୍ତ ସାଧନାର ଇତିହାସ ମୁଁ ପରେ ଶୁଣାଇବି ସମସ୍ତ ଦେଖି ।"

ପିତୃହନ୍ତା ଗ୍ରିଫିନ୍ ମୁହଁରୁ ଜୀବନ କାହାଣୀର ଅବଶିଷ୍ଟାଂଶ ପରେ ଶୁଣିବାର ପ୍ରତିଶ୍ରୁତି ଶୁଣି କଷ୍ଟରେ ହସ ଚାପିରଖିଲେ କେମ୍ପ । ଏହି ନରାଧମ, 'ଏପରି ମହାପାପର କଥା ସ୍ୱୀକାର କରିବା ପରେ

ମଧ୍ୟ ଆଶାରଖୁଛୁ ଯେ ଏହା ପରେ କେମ୍ପ ସମ୍ପର୍କ ରଖିବ ତାହା ସମ୍ଭବ ?

ଗ୍ରିଫିନ୍ ସେତେବେଳେ ମଧ୍ୟ କହି ଚାଲିଛି—"ହଁ, ତରେ ଶୁଣାଇବ । ତୁମକୁ ଆଜ ମୁଁ ଚାହୁଁଛି । ଏକା ଏକା କାର୍ଯ୍ୟ କରିବାରେ ଅସୁବିଧା ଅନେକ । ତେଣୁ ମାର୍ଭେଲ୍ ପରି ଅନାଡ଼ିକୁ ମଧ୍ୟ ମୁଁ ସାଥିକରି ନେବାକୁ ଚାହିଁଥିଲି । ସେ ଯାଇଛି, ଭଲ ହୋଇଛି । ତା'ଠାରୁ ତୁମେ ତ ହଜାର ଗୁଣ ବେଶି କାର୍ଯ୍ୟରେ ଆସିବ ମୋର । ଆଜ ଏକଥା ଶୁଣିଥାଅ—ମୁଁ ତୁମକୁ ମାଗଣା ଖଟାଇବନାହିଁ । ତୁମକୁ ମୁଁ ପୂର୍ଣ୍ଣ ଅଂଶୀଦାର କରିନେବି ମୋର ଅସୀମ ଶକ୍ତିର, ଅଗାଧ ଐଶ୍ୱର୍ଯ୍ୟର । ମୁଁ ଏ କଥା ଦେଉଛି ତୁମକୁ । ନିଶ୍ଚୟ କାର୍ଯ୍ୟରେ ପରିଣତ କରିବି ।"

## ଦଶ

ଏକ ନିଃଶ୍ୱାସରେ ଏତେଗୁଡ଼ିଏ କଥା କହିଗଲା ଗ୍ରିଫିନ୍ । ଟିକିଏ ଦମ୍ ନେଇ ସେ ପୁଣି କହିଲା, "କେମ୍ପ, ତୁମକୁ ମୋର ସବୁକଥା କହିଦେଲି । ତୁମେ ମୋତେ ପୁଲିସରେ ଧରାଇ ଦେବ ନାହିଁ ତ ?"

"ପାଗଳ ହେଲ ଗ୍ରିଫିନ୍ ? ତୁମେ ପରା ମୋର ଘନିଷ୍ଠ ବନ୍ଧୁ ! ଦେଖୁଛି ତୁମେ ବଡ଼ ଉତ୍ତେଜିତ ହୋଇପଡ଼ିଛ । ଟିକିଏ ଶୋଇପଅ ।

କିଛି କ୍ଷଣ ପରେ ଅଦୃଶ୍ୟ ମାନବ ଘୁଙ୍ଗୁଡ଼ି ମାରିବାର ଶବ୍ଦ ଶୁଣିବାକୁ ପାଇଲେ ଡାକ୍ତର କେମ୍ପ । କିନ୍ତୁ ଡାକ୍ତର କେମ୍ପଙ୍କ ଆଖିରେ ଆଜି ନିଦ ଆସୁନି । ସେ ମନେ ମନେ ଭାବୁଛନ୍ତି—କ'ଣ

କରିବେ ? ଏଣେ ଭୋର ହୋଇ ଆସୁଛି । କିଛି କରିବାକୁ ହେଲେ ଏଇଟା ହେଲା ତାର ଉପଯୁକ୍ତ ସମୟ । ଅଦୃଶ୍ୟ ମାନବ ଜାଗିଉଠିଲେ ସାରା ସହରଟାରେ ଗୋଟିଏ ତ୍ରାସ ସୃଷ୍ଟି କରିବ । ହୁଏତ ନରହତ୍ୟା କରିବା ପାଇଁ ସେ କୁଣ୍ଠାବୋଧ କରିବନି । ନିଃଶବ୍ଦରେ ଡ଼.କ୍ତର କେମ୍ପ୍ ଘରରୁ ବାହାରକୁ ଚାଲିଗଲେ । ସେ ଦରଜାଟା ଆସ୍ତେ ଆସ୍ତେ ବନ୍ଦ କରିଦେଲେ । ଅଦୃଶ୍ୟ ମାନବର ଘୁଙ୍ଗୁଡ଼ି ଶବ୍ଦ ସେତେବେଳେ ମଧ୍ୟ ଘର ଭିତରେ ସ୍ପଷ୍ଟଭାବରେ ଶୁଣା ଯାଉଥିଲା । ସେ ତଳକୁ ଓହ୍ଲାଇ ଯାଇ ଗୋଟିଏ ଘର ଭିତରେ ପ୍ରବେଶ କରି ଦରଜାଟା ବନ୍ଦ କରିଦେଲେ । ତା ପରେ ଟେଲିଫୋନ୍‌ର ରିସିଭରଟା ଟେକିନେଇ କହିଲେ—"ହ୍ୟାଲୋ ! ପୁଲିସ ଷ୍ଟେସନ ? ହଁ ମୁଁ ଡାକ୍ତର କେମ୍ପ୍ କହୁଛି । ଯେଉଁ ଅଦୃଶ୍ୟ ମାନବକୁ ଧରିବା ପାଇଁ ଆପଣମାନେ ଖୋଜି ବୁଲୁଛନ୍ତି, ସେ ବର୍ତ୍ତମାନ ମୋ ଘରେ ରହିଛି । ତାକୁ ଯଦି ଧରିବାକୁ ଚାହାନ୍ତି, ତେବେ ଯେତେ ଶୀଘ୍ର ପାରିବେ ଆସନ୍ତୁ ।" ରିସିଭରଟା ଯଥା ସ୍ଥାନରେ ରଖିଦେଇ ଡାକ୍ତର କେମ୍ପ୍ ଦାରୁଣ ଉତ୍ତେଜନାରେ ସମୟ କଟାଇବାକୁ ଲାଗିଲେ ।

ପ୍ରାୟ କୋଡ଼ିଏ ମିନିଟ ପରେ ଗୋଟିଏ ଗାଡ଼ି ଆସି ପହଞ୍ଚିଲା ଡାକ୍ତର କେମ୍ପଙ୍କ ଘର ସାମନାରେ । ହୁଇସିଲ୍ ଓ ପୁଲିସର ଭାରି ବୁଟ୍ ଜୋତାର ଶବ୍ଦ ଇତସ୍ତତଃ ଶୁଣାଗଲା । ଡାକ୍ତର କେମ୍ପ୍ ବୁଝି ପାରିଲେ ଯେ ପୁଲିସ ତାଙ୍କ ଘର ଘେରାଉ କରିଛି । ତେଣୁ ସାହସ କରି ସେ ଦରଜା ଖୋଲି ଶୀଘ୍ର ଶୀଘ୍ର ଉପରକୁ ଉଠିବାକୁ ଲାଗିଲେ । ସିଡ଼ି ମୁହଁରେ କିଏ ତାଙ୍କର ବେକସଣ୍ଢ଼ାଟା ଚିପିଧରି ବଜ୍ର ପାଟିରେ କହିଲା—"ଶୟତାନ ବିଶ୍ବାସଘାତକ, ମୁଁ ତୋର ତଣ୍ଟି ଚିପି ମାରିଦେବି । ମୁଁ ଶୋଇପଡ଼ିଥିବା ଦେଖି ତୁ ପୋଲିସକୁ ଫୋନ୍ କଲୁ ? ମର ତାହେଲେ ।"

ଠିକ୍ ସେହି ସମୟରେ କଲିଂ ବେଲଟା ବାଜିଉଠିଲା । ଦାସୀ ଦରଜା ଖୋଲଦେବା କ୍ଷଣି କର୍ଣ୍ଣେଲ ଏଡ଼ଙ୍କ ସହିତ ପୁଲିସ ଦଳ ଖରବେଗରେ ପଶିଗଲେ ଘର ଭିତରକୁ । ଠିକ୍ ସେହି ସମୟରେ ଅତିକଷ୍ଟରେ ଦମ ନେଇ ଚିତ୍କାର କରି ଉଠିଲେ ଡାକ୍ତର କେମ୍ପ—"କର୍ଣ୍ଣେଲ,ଶୀଘ୍ର ଉପରକୁ ଆସନ୍ତୁ । ଅଦୃଶ୍ୟ ମାନବ ମୋତେ ମାରି ଦେଉଛି ।"

କର୍ଣ୍ଣେଲ ଏଡ଼ କେମ୍ପ୍‌କୁ ଉଦ୍ଧାର କରିବା ଉଦ୍ଦେଶ୍ୟରେ ଉପରକୁ ଦୌଡିଲେ, କିନ୍ତୁ ଅଦୃଶ୍ୟ ମାନବ ସେତେବେଳେ ଡାକ୍ତର କେମ୍ପ୍‌କୁ ଛାଡ଼ିଦେଇ ସେଠାରୁ ପଳାୟନ କରିସାରିଲାଣି । ଡାକ୍ତର କେମ୍ପ୍ ସେତେବେଳେ ଭୟରେ କମ୍ପୁଥାନ୍ତି । ଇନ୍‌ସପେକ୍ଟରଙ୍କୁ ଦେଖି ସାହସ ପାଇ ସେ କହିଲେ, "ଆସିଛନ୍ତି ଇନ୍‌ସପେକ୍ଟର ସାହେବ ? କିନ୍ତୁ ପକ୍ଷୀ ଉଡ଼ିଯାଇଛି । ତାକୁ ବର୍ତ୍ତମାନ ଧରିବା ଅତିଶୟ କଷ୍ଟ ।"

ହତାଶ ହୋଇ କର୍ଣ୍ଣେଲ ପଚାରିଲେ—"ତା ହେଲେ ଉପାୟ ?"

"ଗୋଟିଏ ଉପାୟ ଅଛି । ଖାଲି ଆଖିରେ ଆମେ ତାକୁ ଧରିପାରିବା ନାହିଁ । ତାକୁ ଧରିବାକୁ ହେଲେ ପଛେ ପଛେ କୁକୁର ଛାଡ଼ିଦେବାକୁ ହେବ । କୁକୁର ନିଜର ଘ୍ରାଣ ଶକ୍ତି ବଳରେ ତାର ଅସ୍ତିତ୍ୱ ଅନୁଭବ କରିପାରିବ । ସେ ମଧ୍ୟ ମୋତେ କହିଛି ଯେ ସେ ମାରଭେଲ୍‌କୁ ଖୋଜି ବାହାର କରିବ । କାରଣ ମାର୍‌ଭେଲ୍ ନିକଟରେ ରହିଛି ତାର ସମସ୍ତ ଜୀବନର ସାଧନା—ତିନିଖଣ୍ଡ ଡାଇରି । ଏଠାରେ ରହିବାକୁ ହେଲେ ତାର ଦରକାର ଖାଇବା ଓ ରହିବା ସ୍ଥାନ । ଆପଣ ଚେଷ୍ଟା କରନ୍ତୁ—ସେ ଯେପରି କେଉଁଠି ଖାଇବା ଓ ରହିବାର ସ୍ଥାନ ଯୋଗାଡ଼ କରିପାରିବନାହିଁ ।

କର୍ଣ୍ଣେଲ ଏଡ଼ି କହିଲେ, "ବେଶ୍, ତାହା କରିବାର ଚେଷ୍ଟା କରିବ, କିନ୍ତୁ ଯଦି ଏପରି ଭାବରେ ତାକୁ ଧରି ପାରିବନାହିଁ ତା ହେଲେ ତାକୁ ଧରିବାର ଅନ୍ୟ କୌଣସି ଉପାୟ ଅଛି କି ?

ଟିକିଏ ଗମ୍ଭୀର ହୋଇଗଲେ ଡାକ୍ତର କେମ୍ପ୍। ତା ପରେ କହିଲେ—ହଁ ଅଛି। କିନ୍ତୁ ତାହା ହେଉଛି ଅତ୍ୟନ୍ତ ନିଷ୍ଠୁର କାର୍ଯ୍ୟ। ସମସ୍ତ ପଥରେ ଭଙ୍ଗା କାଚ ବିଛେଇଦେବା। ବିଜ୍ଞାନ ସାହାଯ୍ୟରେ ସେ ନିଜ ଶରୀରଟାକୁ ଅଦୃଶ୍ୟ କରିପାରିଛି ସତ, କିନ୍ତୁ ବର୍ତ୍ତମାନ ସୁଦ୍ଧା ନିଜର ରକ୍ତ ବା ନିଜର ପୋଷାକକୁ ଅଦୃଶ୍ୟ କରିପାରିନାହିଁ। ତେଣୁ ରାସ୍ତାରେ କାଚ ବିଛେଇଦେଲେ ଖାଲି ପାଦରେ ସେ ରାସ୍ତାରେ ଚାଲିଲେ ରକ୍ତର ଦାଗପଡ଼ିବ। ତାହେଲେ ଆମ୍ଭେମାନେ ତାକୁ ଧରିପାରିବା। ଆଉ ଯଦି ଯୋତା ପିନ୍ଧି ଚାଲେ, ତାହେଲେ ତାର ଯୋତାକୁ ଦେଖି ଆମେମାନେ ସହଜରେ ଅସ୍ତିତ୍ୱ ବୁଝିପାରିବା।

କର୍ଣ୍ଣେଲ ଏଡ଼ି ଡାକ୍ତର କେମ୍ପଙ୍କ ପ୍ରସ୍ତାବରେ ସମ୍ମତ ହୋଇ ବିଦାୟ ନେଲେ।

## ଏଗାର

ସେଦିନଠାରୁ ସମସ୍ତ ବସ ଏବଂ ମଟରଚାଳକମାନଙ୍କ ଉପରେ ପୁଲିସ ହୁକୁମ ଜାରି କରିଦେଲା ଯେ ସେମାନେ କେହି ଯାନବାହନ ବାର୍ଡ଼କ ସହର ଭିତରକୁ ନେଇ ପାରିବେ ନାହିଁ। ରେଲଗାଡ଼ି ବିଷୟରେ ବ୍ୟବସ୍ଥା ହେଲା ଯେ ବାର୍ଡ଼କ ସହରର ପୂର୍ବ ଷ୍ଟେସନରେ ସବୁ ଡବାଗୁଡ଼ିକ ବନ୍ଦକରି ଦିଆଯିବ। ବାର୍ଡ଼କ ଷ୍ଟେସନରେ କେହି ଟ୍ରେନରୁ ଓହ୍ଲାଇ ପାରିବେନାହିଁ ବା ଟ୍ରେନ ଭିତରକୁ ଯାଇ ପାରିବେ ନାହିଁ। ତାପରେ ଷ୍ଟେସନରେ ପୁଲିସ ଯାଇ ସବୁ ଡବାର ଦ୍ୱାର ଖୋଲି

ଦେବେ। ମାଲ ଗାଡ଼ିରେ ବସି କାଳେ ଅଦୃଶ୍ୟ ମାନବ ଚାଲିପିବ ଭାବି ରେଳ କର୍ତ୍ତୃପକ୍ଷ ମାଲଗାଡ଼ି ଚଳାଚଳ ବନ୍ଦ କରିଦେଲେ। ସହରର ସ୍କୁଲ, କଲେଜ, ଅଫିସ ସବୁ କଣ୍ଟିଦିନ ପାଇଁ ବନ୍ଦ କରଦେବାକୁ ହେଲା । ଘର ଘର ବୁଲି ପୁଲିସମାନେ କହିଆସିଲେ ଦରଜା ବନ୍ଦ କରି ରଖିବା ପାଇଁ। ହୋଟେଲ ଗୁଡ଼ିକୁ ଖାଦ୍ୟ ଗୁଡ଼ିଦେଇ ରଖିବାକୁ କୁହାଗଲା।

ଥାନାକୁ ଦୁଇପହରଠାରୁ ଟେଲିଫୋନ ପରେ ଟେଲିଫୋନ୍ ଆସିବାକୁ ଲଗିଲା। କିଏ ଜଣାଇଲା ଯେ ସେ ଗୋଟିଏ ଲୁହା ଛଡ଼ି ଶୂନ୍ୟରେ ଗୋଟିଏ ପାଖରୁ ଅନ୍ୟ ପାଖକୁ ଚାଲିବା ଦେଖିଛି। କିଏ ବା ଜଣାଇଲା ଯେ ତା ସାହିର ଗୋଟିଏ ପିଲା ଖେଳୁଥିବାବେଳେ ଅଦୃଶ୍ୟ ମାନବ ତାକୁ ଉପରକୁ ଟେକି ତଳେ କଚାଡ଼ି ଦେବା ଫଳରେ ତାର ଗୋଟିଏ ଗୋଡ଼ ଭାଙ୍ଗି ଯାଇଛି କିଏ। ପୁଣି ଜଣାଇଲା ଯେ ପାହାଡ଼ର ପାଦଦେଶରେ ଯେପରି କିଏ ହାଃ ହାଃ କରି ହସୁଥିବା ସେ ଶୁଣିଛି। ଏହାସବୁ ଶୁଣି ରାସ୍ତା ରାସ୍ତାରେ ଶିକାରୀ କୁକୁର ନେଇ ପୁଲିସ କଡ଼ା ପହରା ଦେବାକୁ ଲାଗିଲେ।

ତହିଁ ଆରଦିନ ସକାଳୁ କର୍ଣ୍ଣେଲ ଏଡ଼ିଙ୍କୁ ଡାକ୍ତର କେମ୍ପ ପଚାରିଲେ, "ଅଦୃଶ୍ୟ ମାନବର କୌଣସି ଖବର ପାଇଲେ ?"

"ନା, ବର୍ତ୍ତମାନ ସୁଦ୍ଧା ବିଶ୍ୱାସ କରିବା ଭଳି କୌଣସି ଖବର ମୁଁ ପାଇନାହିଁ । ଆତଙ୍କଗ୍ରସ୍ତ ହୋଇ ଲୋକମାନେ ନାନା ରକମର ବାଜେ ଖବର ପ୍ରଚାର କରୁଛନ୍ତି କେବଳ।"

ଠିକ୍ ସେତିକବେଳେ ଗୋଟିଏ ଢେଲା ଆସି ଝରକା କାଚ ଭାଙ୍ଗି ଘର ଭିତରେ ପଡ଼ିଲା । ସେଥିରେ ଖଣ୍ଡିଏ କାଗଜ ବନ୍ଧା ହୋଇଥିବା ଦେଖି ଡାକ୍ତର କେମ୍ପ ତାହା ତତ୍କ୍ଷଣ ଉଠାଇ ନେଲେ।

କାଗଜଟା ଖୋଲି ନେଇ ଦେଖିଲେ ଯେ ତାହା ଗୋଟିଏ ଚିଠି ଏବଂ ସେଇଟା ତାଙ୍କୁ ଉଦ୍ଦେଶ୍ୟ କରି ଲେଖାଯାଇଛି । ଏକା ନିଃଶ୍ୱାସରେ ଚିଠି ଖଣ୍ଡିକ ପଢ଼ିନେଲେ ଡାକ୍ତର କେମ୍ପ୍ । ଡାକ୍ତରଙ୍କୁ ଚିନ୍ତିତ ଦେଖି କର୍ଣ୍ଣେଲ ଏଡ଼ ପଚାରିଲେ''ଘଟଣା କଣ ଡାକ୍ତର କେମ୍ପ ?''

''ଅଦୃଶ୍ୟ ମାନବ ମୋ ପାଖକୁ ଖଣ୍ଡିଏ ଚିଠି ଲେଖିଛି ।''

''କଣ ଲେଖିଛି ସେ ?''

''ଶୁଣନ୍ତୁ ପଢ଼ୁଛି ।'' ତହୁଁ ଡାକ୍ତର କେମ୍ପ୍ ଚିଠି ଖଣ୍ଡିକ ବଡ଼ ପାଟିରେ ପଢ଼ିଲେ—''ଶୟତାନ୍ ! ବିଶ୍ୱାସଘାତକ ! ସେଦିନ ପୁଲିସ ଆସି ପହଞ୍ଚିବାରୁ ତୁ ବଞ୍ଚିଗଲୁ । ତୁ ଭାବିଛୁ ଯେ ମୋର ରହିବା ଏବଂ ଖାଇବାର ଅସୁବିଧା କରି ତୁ ମୋତେ ଧରିବୁ ! ମୋ ପଛରେ ମଧ୍ୟ ଶିକାରୀ କୁକୁର ଲଗାଇ ଦେଇଛୁ । ଏ କଥା ତୁ ଜାଣି ରଖ ଆଜି ପୁଲିସକୁ ଜଣାଇଦେ ଯେ ମୋର ଖିଆପିଆ ଠିକ୍ ଚାଲିଛି ରହିବା ପାଇଁ ଖଣ୍ଡିଏ ଜାଗା ମଧ୍ୟ ପାଇଛି । ଆଜିଠାରୁ ଏହି ବାର୍ଡକ ସହର ମୋର ରାଜ୍ୟ । ମୁଁ ବାର୍ଡକ ସହରର ସ୍ୱାଧୀନ ରାଜା । ବର୍ତ୍ତମାନ ମୋର ପ୍ରଥମ ଘୋଷଣା ଶୁଣ—ଡାକ୍ତର କେଂପ୍ ନାମକ ଏକ ଲଜ୍ଜାବିହୀନ ଶିକ୍ଷିତ ବାନର ମୋ ସହରରେ ବାସକରେ । ମୋର ପ୍ରଥମ କାର୍ଯ୍ୟ ହେଲା ପାଗଳ କୁକୁର ପରି ତାକୁ ପିଟି ପିଟି ମାରିଦେବା—କାରଣ ସେ ବିଶ୍ୱାସଘାତକ । କୌଣସି ବିଶ୍ୱାସ-ଘାତକର ସ୍ଥାନ ନାହିଁ ମୋ ରାଜ୍ୟରେ । ଇତି ।

ବାର୍ଡ଼କ ସହରର ରାଜା ଅଦୃଶ୍ୟମାନବ ।''

କର୍ଣ୍ଣେଲ ଏଡ଼ ଆଶ୍ୱାସନା ଦେଇ କହିଲେ; ''ଆପଣ ଭୟ କରନ୍ତୁ ନାହିଁ ଡାକ୍ତର କେଂପ୍ । ମୁଁ ବର୍ତ୍ତମାନ ଥାନାକୁ ଫୋନ୍ କରିଦେଉଛି । ଦଳେ ପୁଲିସ ଆସି ଆପଣଙ୍କ ଘରର ଚାରିପଟେ ଜଗି ରହିବେ ।''

ଚଳକୁ ଆସି ରସିଭରଟା ଉଠାଇଲେ କର୍ଣ୍ଣେଲ ଏଡ଼ । ଦେଖାଗଲା ଟେଲିଫୋନ୍‌ର ତାର କଟିଯାଇଛି । ତେଣୁ କର୍ଣ୍ଣେଲ ଏଡ଼ ଠିକ୍ କଲେ ଯେ ଖଣ୍ଡେ ଚିଠି ପରିଚାରିକା ହାତରେ ଦେଇ ଥାନାକୁ ପଠାଇବେ । ଅଦୃଶ୍ୟ ମାନବ ଭୟରେ ପରିଚାରିକା ଯିବାକୁ ପ୍ରଥମେ ମନା କଲେ ହେଁ ପରେ ସେଥିପାଇଁ ରାଜି ହେଲା । ସେ କର୍ଣ୍ଣେଲଙ୍କ ଚିଠି ନେଇ ଥାନାକୁ ଯିବା ପରେ ପରେ ଘରର ଦରଜା ବନ୍ଦ କରିଦେଲେ କେମ୍ପ ।

ହଠାତ୍ ଚିତ୍କାର ଶୁଣି ଘରର ଦରଜା ଖୋଲି ଡାକ୍ତର କେମ୍ପ୍ ଦେଖିଲେ ତାଙ୍କ ପରିଚାରିକା ରାସ୍ତାରେ ଗଡ଼ଗଡ଼ି ଚିତ୍କାର କରୁଛି ଏବଂ କର୍ଣ୍ଣେଲଙ୍କ ଚିଠି ଖଣ୍ଡିକ ଶୂନ୍ୟରେ ରହିଛି । କେତେ ସମୟ ପରେ ଚିଠି ଖଣ୍ଡିକ ନିଜେ ନିଜେ ଟିକିଟିକି ହୋଇ ପବନରେ ଉଡ଼ିବାକୁ ଲାଗିଲା । ଡାକ୍ତର କେମ୍ପ୍ କର୍ଣ୍ଣେଲଙ୍କୁ କହିଲେ, "କର୍ଣ୍ଣେଲ ସାହେବ ମୋ ପରିଚାରିକାକୁ ଆକ୍ରମଣ କରି ଅଦୃଶ୍ୟ ମାନବ ଚିଠିଟି ନଷ୍ଟ କରିଦେଲା ।"

"ବର୍ତ୍ତମାନ ଉପାୟ କଣ ?"

"ଉପାୟ କିଛି କରିବାକୁ ହେବ । ମୁଁ ନିଜେ ଥାନାକୁ ଯିବି ।"

ଭୟାର୍ତ୍ତ ସ୍ୱରରେ ଡାକ୍ତର କେମ୍ପ କହିଲେ, "ଆପଣ ଚାଲି-ଗଲେ ମୋ ଅବସ୍ଥା କଣ ହେବ ?"

"ଭୟ କରନ୍ତୁ ନାହିଁ ଡାକ୍ତରବାବୁ ! ମୁଁ ଚାଲିଯିବା ସଙ୍ଗେ ସଙ୍ଗେ ଦରଜାଟା ବନ୍ଦ କରି ଦିଅନ୍ତୁ ଓ ପିସ୍ତଲଟା ସର୍ବଦା ପକେଟରେ ପ୍ରସ୍ତୁତ ରଖିଥାନ୍ତୁ । ମୁଁ ଶୀଘ୍ର ଫେରିଆସିବି ।"

ଡାକ୍ତର କେମ୍ପ୍‌ଙ୍କ ଘରର ପଛପଟେ ପାହାଡ଼ ତଳେ ଗୋଟିଏ ସିଧା ରାସ୍ତା ପଡ଼ିଛି ଥାନାକୁ । ଶୀଘ୍ର ଥାନାରେ ପହଞ୍ଚିବା ପାଇଁ

କର୍ଣ୍ଣେଲ ସେହି ରାସ୍ତା ଧରିଲେ । ହଠାତ୍ କର୍ଣ୍ଣେଲଙ୍କର ପାଦ ଅଟକି ଗଲା । ନିଜକୁ ସମ୍ଭାଳି ପାରିଲେନି କର୍ଣ୍ଣେଲ ଏଡ୍; ସେ ସଙ୍ଗେ ସଙ୍ଗେ ତଳେ ପଡ଼ିଗଲେ । ସେତେବେଳେ ତାଙ୍କର ମନେହେଲା କିଏ ଯେପରି ତାଙ୍କ ଛାତି ଉପରେ ମାଡ଼ିବସିଛି । ସେ ରିଭଲଭରଟା ବାହାର କଲେ ଗୁଳି ଚଳାଇବା ପାଇଁ; କିନ୍ତୁ ଗୁଳି ଚଳାଇବା ପୂର୍ବରୁ ତାଙ୍କ ହାତରୁ ପିସ୍ତଲଟା କିଏ ଛଡ଼ାଇ ନେଲା ଜୋର୍‌ରେ । ପରମୁହୂର୍ତ୍ତରେ କର୍ଣ୍ଣେଲ ଦେଖିଲେ ରିଭଲଭରଟା ଶୂନ୍ୟରେ ତାଙ୍କ ଆଡ଼କୁ ମୁହାଁଇ ରହିଛି । ପବନଭିତରୁ ସେ ଶୁଣିବାକୁ ପାଇଲେ, "ବର୍ତ୍ତମାନ କଣ ହେବ ପୁଲିସ ମହାଶୟ ?"

କର୍ଣ୍ଣେଲ କହିଲେ, "ଇଚ୍ଛାକଲେ ତୁମେ ହତ୍ୟା କରିପାର ।"

"ନା, ତୁମ ଉପରେ ମୋର କିଛି ରାଗ ନାହିଁ । ବର୍ତ୍ତମାନ ତୁମେ ଉଠି ଠିଆ ହୋଇଯାଅ । ତୁମକୁ ମୁଁ ହତ୍ୟା କରିବିନାହିଁ । ତେବେ ମୋର ଆଦେଶ ତୁମେ ପୁଣିଥରେ ଯାଅ ଡାକ୍ତର କେମ୍ପଙ୍କ ଘର ଭିତରକୁ ।"

କର୍ଣ୍ଣେଲ କହିଲେ, "ତାହେଲେ ତୁମେ ସେହି ସୁଯୋଗରେ ତାଙ୍କ ଘର ଭିତରକୁ ଯାଇ ତାଙ୍କୁ ଖୁନ୍ କରିବ ? ନା, ତାହା କଦାପି ହୋଇପାରିବନାହିଁ । ତୁମର ଇଚ୍ଛା ହେଲେ ତୁମେ ମୋତେ ଗୁଳି କରିପାର ।"

—"ମୋର ଦୋଷ ନାହିଁ ତା ହେଲେ । ତୁମେ ତୁମର ନିଜର ଇଚ୍ଛାରେ ମରିବାକୁ ଯାଉଛ ।" ତତ୍‌କ୍ଷଣାତ୍ ପିସ୍ତଲ ଫୁଟିଲା । ଗୋଟିଏ ତୀବ୍ର ଆର୍ତ୍ତନାଦ କରି କର୍ଣ୍ଣେଲ ଏଡ୍ ଲୋଟି-ଗଲେ ରାସ୍ତାର ଧୂଳିରେ ।

ଏହି ଘଟଣାର କିଛି କ୍ଷଣ ପରେ ଏକ ପ୍ରଚଣ୍ଡ ଶବ୍ଦରେ ଡାକ୍ତର କେମ୍ପ ଚମକିଉଠିଲେ । ସେ କୋଠା ଉପରକୁ ଯାଇ ଯାହା ଦେଖିଲେ ସେଥିରେ ତାଙ୍କର ଶୁଣ୍ଡିର ରକ୍ତ ହିମ ପାଲଟି ଗଲା । ଗୋଟିଏ କୋଦାଳ ମନକୁ ମନ ତାଙ୍କ ସଦର ଦରଜାରେ ଆଘାତ କରୁଛି । ଏତେ ପ୍ରଚଣ୍ଡ ଜୋରରେ ଆଘାତ କରୁଛି ଯେ ସେହି ଆଘାତରେ ସମୁଦାୟ ଘରଟି କମ୍ପି ଉଠୁଛି । ଡାକ୍ତରଙ୍କର ମନେହେଲା, ହୁଏତ ସଦର ଦରଜାଟା ବର୍ତ୍ତମାନ ଭାଙ୍ଗିଯିବ । ଡାକ୍ତର ଭୟରେ କମ୍ପି ଉଠିଲେ । ହଠାତ୍ ଦୂରରୁ ପୁଲିସର ହୁଇସିଲ ଶୁଣାଗଲା । ଝରକା ବାଟେ ସେ ଲକ୍ଷ୍ୟକଲେ ଯେ ତାଙ୍କର ଦାସୀ ତିନିଜଣ ପୁଲିସଙ୍କୁ ନେଇ ଧଇଁସଇଁ ହୋଇ ଘର ଆଡ଼କୁ ଆସୁଛନ୍ତି ।

ଅଦୃଶ୍ୟ ମାନବ ହାତରୁ ରକ୍ଷାପାଇ ପରିଚାରିକା ସିଧା ଦୌଡ଼ିଥିଲା ଥାନାକୁ ଓ ସେଠାରେ ମୁନିବର ବିପଦ କଥା କହି ସେ ତିନିଜଣ ପୁଲିସଙ୍କୁ ସଙ୍ଗରେ ଆଣିଛି । ପୁଲିସମାନେ ଆସିବା ଦେଖି କୋଦାଳ ମାଡ଼ ବନ୍ଦ ହୋଇଗଲା । ଡାକ୍ତର କେମ୍ପ୍ ଭାବିଲେ ଯେ ପୋଲିସଙ୍କୁ ଦେଖି ଅଦୃଶ୍ୟ ମାନବ ଭୟରେ ହୁଏତ ପଳାଇଯାଇଛି । ଡାକ୍ତର ଦରଜାଟା ଖୋଲିଦେଲେ ଓ ତିନିଜଣ ପୁଲିସଙ୍କୁ ନେଇ ପରିଚାରିକା ପଶିଗଲା ଘର ଭିତରେ । ଠିକ୍ ସେହି ସମୟରେ ଆଉ ଜଣେ ପୋଲିସ ଆସି ଅନ୍ୟ ପୁଲିସଙ୍କୁ ଖବର ଦେଲା ଯେ ସେ ରାସ୍ତା ଉପରେ କର୍ଣ୍ଣେଲ ଏଡ଼ିଙ୍କୁ କିଏ ହତ୍ୟା କରିଛି । କର୍ଣ୍ଣେଲଙ୍କର ରକ୍ତାକ୍ତ ଶବଟା ପଡ଼ିରହିଛି ସେଠାରେ ।

ଖବରଟା ଶୁଣି ଡାକ୍ତର କେମ୍ପ କହିଲେ, "ଆପଣମାନେ ଦୟାକରି ଆଗେ ଦରଜାଟା ବନ୍ଦ କରିଦିଅନ୍ତୁ । ନହେଲେ ଅଦୃଶ୍ୟ ମାନବ ଘର ଭିତରେ ପଶିଯିବ ।"

ଦରଜା ବନ୍ଦକରି ଡ଼ାକ୍ତର କେମ୍ପ୍ ପୋଲିସମାନଙ୍କୁ ସଙ୍ଗରେ ନେଇ ଉପରକୁ ଉଠିଆସିଲେ । ଦୋତାଲାର ବାରଣ୍ଡାରେ ପାଦ ଦେବା ସଙ୍ଗେ ସଙ୍ଗେ କିଏ ଯେପରି ଜୋର୍‌ରେ ତାଙ୍କର ତଣ୍ଟି ଚିପିଧରିଲା । ଏତେ ଜୋର୍‌ରେ ତାଙ୍କ ତଣ୍ଟିଟା ସେ ଚିପିଧରିଥିଲା ଯେ ଡାକ୍ତର କେମ୍ପ୍ କୌଣସି ପ୍ରକାରେ ସାମାନ୍ୟ ଶବ୍ଦ ଟିକିଏ କରି ପାରିଲେନି । ସେ ତାଙ୍କ ତଣ୍ଟିଟାକୁ ମୁକ୍ତ କରିବା ପାଇଁ ଚେଷ୍ଟା କଲେ—କିନ୍ତୁ ପାରିଲେନାହିଁ ।

"କଣ ହେଲା ଡ଼ାକ୍ତର କେମ୍ପ—କଥା କହୁନାହାନ୍ତି ଯେ ?" ତାଙ୍କ ମୁହଁ ଶେତା ପଡ଼ିଗଲାଣି । କି ଆଶ୍ଚର୍ଯ୍ୟ—ତାଙ୍କୁ କିଏ ଜୋର୍‌ରେ ପଛରୁ ଟାଣି ନେଲାପରି ମନେହେଉଛି । ଅଦୃଶ୍ୟ ମାନବ ତାଙ୍କୁ ଆକ୍ରମଣ କରିନି ତ—ଜଣେ ପୁଲିସ କହିଲା ।

ଗ୍ରିଫିନ୍ ସେତେବେଳକୁ ଡାକ୍ତର କେମ୍ପଙ୍କୁ ଟାଣି ଟାଣି ପ୍ରାୟ କାନ୍ଥ ନିକଟକୁ ନେଇ ସାରିଲଣି । ତିନିଜଣ ପୁଲିସ ସଙ୍ଗେ ସଙ୍ଗେ ଡାକ୍ତର କେମ୍ପଙ୍କ ଆଡ଼କୁ ଦୌଡ଼ିଗଲେ ତାଙ୍କୁ ସାହାଯ୍ୟ କରିବା ପାଇଁ । ଅଦୃଶ୍ୟ ମାନବ ବିପଦ ବୁଝିପାରି ସଙ୍ଗେ ସଙ୍ଗେ ଡାକ୍ତରଙ୍କ ପକେଟରୁ ବାହାର କରିନେଲା ପିସ୍ତଲଟା । ତାପରେ ସେ ପାଟିକଲା —"ସାବଧାନ, ସାବଧାନ । ଆଉ ପାଦେମାତ୍ର ଆଗେଇଲେ ଭୁମ ଖପୁରି ଉଡ଼ାଇଦେବ ।"

ଏଣେ ଗ୍ରିଫିନର ହାତରୁ ଡାକ୍ତର କେମ୍ପ୍ ଛାଡ଼ପାଇ ପ୍ରାଣ-ଭରି ନିଃଶ୍ୱାସ ନେବାକୁ ଲାଗିଲେ । ତାପରେ ଟିକିଏ ସୁସ୍ଥ ବୋଧ ହେବାପରେ ସେ ପ୍ରସ୍ତୁତ ହୋଇଗଲେ ପାଲଟା ଆକ୍ରମଣ କରିବା ପାଇଁ । ସେତେବେଳକୁ ପୁଲିସ ହାତରୁ ରକ୍ଷା ପାଇବାପାଇଁ ଅଦୃଶ୍ୟ ମାନବ ପିସ୍ତଲଟା ଧରିଛି ତା ହାତରେ । ଡାକ୍ତର କେମ୍ପ୍ ସେହି ପିସ୍ତଲର ଅବସ୍ଥାନ ଦେଖି ଅନ୍ଦାଜ କରିନେଲେ ଗ୍ରିଫିନର ପିଠି

ଆଉ ହାତ କେଉଁଠି ଥାଇପାରେ । ତାପରେ ପଛରୁ ଦୁଇ ହାତରେ ତାକୁ କୁଣ୍ଢାଇ ଧରି ଚିତ୍କାରକଲେ, "ଶୀଘ୍ର ଏହାକୁ ବାନ୍ଧ ପକାନ୍ତୁ । ମୁଁ ତାକୁ ଭିଡ଼ ଧରିଛି ।"

ଏତିକିବେଳେ ଶୂନ୍ୟରେ ପିସ୍ତଲରୁ ଗୁଳି ଫୁଟିଗଲା । ଡାକ୍ତର କେମ୍ପ୍ ପଛରୁ ଜୋର୍‌ରେ ଧରିବା ଫଳରେ ଗ୍ରିଫିନ୍‌ର ଲକ୍ଷ୍ୟ ଭ୍ରଷ୍ଟ ହେଲା । ଗୁଳି ଯାଇ ବାଜିଲା କାନ୍ଥରେ । ଏହି ସମୟରେ ଜଣେ ପୁଲିସ ତାର ଲାଠିରେ ପିସ୍ତଲକୁ ଲକ୍ଷ୍ୟ କରି ଆଘାତ କଲା । ପିସ୍ତଲଟା ଶୂନ୍ୟରୁ ପଡିଗଲା ତଳେ । ସଙ୍ଗେ ସଙ୍ଗେ ତିନିଜଣ ଯାକ ପୁଲିସ ଆଗେଇ ଗଲେ ଅଦୃଶ୍ୟ ମାନବକୁ ବାନ୍ଧିବାପାଇଁ । ମାତ୍ର ଗ୍ରିଫିନ୍ କାହିଁ ! ସେ ଯେ ଖସି ଚାଲିଗଲାଣି । ଡାକ୍ତର ଚିତ୍କାର କଲେ ସଦର ଦରଜା ବନ୍ଦକର—ନହେଲେ ସେବାଟେ ଖସି ଚାଲିଯିବ ।

ଡାକ୍ତର କେମ୍ପଙ୍କ କଥା ଶୁଣିବା ସଙ୍ଗେ ସଙ୍ଗେ ପୁଲିସମାନେ ତଳକୁ ଦୌଡ଼ିଗଲେ, କିନ୍ତୁ ସେମାନେ ଦରଜା ନିକଟରେ ପହଞ୍ଚିବା ପୂର୍ବରୁ ସଦର ଦରଜାଟା ମନକୁ ମନ ଖୋଲିଗଲା । ଉପରୁ ଏହି ଦୃଶ୍ୟ ଦେଖି ଡାକ୍ତର କେମ୍ପ୍ ଦୀର୍ଘନିଃଶ୍ୱାସ ତ୍ୟାଗ କରି କହିଲେ— "ସେ ଆମ ହାତରୁ ଖସିଗଲା ।"

ଜଣେ ପୁଲିସ କହିଲା—ସେ ପଳାଇ ପାରିବ ନାହିଁ—କାରଣ ବାହାରେ ଦଳେ ପୁଲିସ ଶିକାରି କୁକୁର ନେଇ ପହରା ଦେଉଛନ୍ତି । ପଳାଇବାକୁ ଗଲେ ଅଦୃଶ୍ୟ ମାନବ ନିଶ୍ଚୟ ସେହି କୁକୁର ନିକଟରେ ଧରାପଡ଼ିଯିବ । ତେଣୁ ନିରାପଦ ଆଶ୍ରୟ ନିମନ୍ତେ ତାକୁ ପୁଣି ଘର ଭିତରକୁ ଫେରି ଆସିବାକୁ ପଡ଼ିବ ।

ଡାକ୍ତର କେମ୍ପ ଚିତ୍କାର କରି କହିଲେ, "ପୁଲିସମାନଙ୍କୁ ଡାକନ୍ତୁ । ସେମାନେ କୁକୁର ନେଇ ଆସନ୍ତୁ ଘରଭିତରକୁ । ସେ ଆଉ କି କାଣ୍ଡ କରିବ ତାହା କିଏ କହିପାରିବ ?"

ଡାକ୍ତର କେମ୍ପଙ୍କ କଥା ଶୁଣି ପୁଲିସଟି ଚାଲିଗଲା ଅନ୍ୟ ପୁଲିସଙ୍କୁ ଡାକିଆଣିବା ପାଇଁ । ଦରଜା ଖୋଲିଥିଲା । ସେହି ପଥରେ ଗୋଟିଏ କୋଦାଳ ସିଧା ପଶିଗଲା ଘର ଭିତରକୁ । ତାପରେ ସିଡ଼ି ଉପରେ ଉଠି ଚାଲିଲା ଡାକ୍ତର କେମ୍ପଙ୍କ ଆଡ଼କୁ । ଜଣେ ପୁଲିସ ଏହା ଦେଖି ଲଠିରେ ଘାଆରେ ପିଟି ଦେଲାରୁ କୋଦାଳଟା ତଳେ ପଡ଼ିଗଲା ଏବଂ ତତ୍‌କ୍ଷଣାତ୍ ଆର୍ତ୍ତନାଦ ଶୁଣାଗଲା ।

—ଓଃ ମରିଗଲି !

ପୁଲିସଟି ପାଟିକଲା—"ତା ହେଲେ ବାଜିଛି, ଠିକ୍ ଥାନରେ ବାଜିଛି । ମୁଁ ଅଦୃଶ୍ୟ ମାନବକୁ ଆଘାତ କରିପାରିଛି ।"

ଆଉ ଡାକ୍ତର କେମ୍ପ ? ଗ୍ରିଫିନ୍ ହାତରୁ ଆପାତତଃ ମୁକ୍ତିପାଇ କ୍ଷିପ୍ରବେଗରେ ସେ ତଳକୁ ଦୌଡ଼ିଲେ ସିଡ଼ି ପଥ ଦେଇ ।

## ବାର

ଡାକ୍ତର କେମ୍ପଙ୍କର ନିକଟତମ ପ୍ରତିବେଶୀ ହେଉଛନ୍ତି ମି. ହିଲସ୍ । ଯେଉଁ ଅଳ୍ପସଂଖ୍ୟକ ଲୋକ ବର୍ତ୍ତମାନ ମଧ୍ୟ ଅଦୃଶ୍ୟ ମାନବର କାହାଣୀକୁ ଗୁଲିଖଟି ଗପ ବୋଲି ଉଡ଼ାଇ ଦେଉଥିଲେ ହିଲସ ସେମାନଙ୍କ ମଧ୍ୟରୁ ଜଣେ । କେମ୍ପଙ୍କ ଘରେ ଯେତେବେଳେ ଅଦୃଶ୍ୟ ମାନବର ଉତ୍ପାତ ଚାଲିଥିଲା—ସେତେବେଳେ ହିଲସ୍ ପରମ ନିରୁଦ୍‌ବେଗରେ ଦିବାନିଦ୍ରା ଯାଇଥିଲେ ଘର ଭିତରେ ।

ହିଲସ୍ ଅବିଶ୍ୱାସୀ ଥିଲେ ଅଦୃଶ୍ୟ ମାନବ ସଂପର୍କରେ । ତେଣୁ ଘର ବନ୍ଦ ରଖିବା ପାଇଁ ପୋଲିସର ପରାମର୍ଶ ସତ୍ତ୍ୱେ ସେ କୌଣସି ପ୍ରକାର ସତର୍କତା ଅବଲମ୍ବନ କରିବାପାଇଁ ନାରାଜ ।

ଏଣେ କେମ୍ପ୍‌ଙ୍କ ଘରେ କୋଦାଳ ଆଘାତରେ ଝରକା ପରେ ଝରକା ଭାଙ୍ଗିବାରେ ଲାଗିଛି । ତେଣେ ହାଇଡସ ଭାଙ୍ଗୁଥିବା ଶୋଉଛନ୍ତି ଆଗମନରେ । କିନ୍ତୁ ହଠାତ୍ ତାଙ୍କର ଭାଙ୍ଗୁଥିବା ଶବ୍ଦ ବନ୍ଦ ହୋଇଗଲା । ଅନ୍ଧାରରେ ଏତେ ସୁଖର ନିଦଟା ଭାଙ୍ଗିଗଲା । ହାଇଡସ ଆଦୌ ବୁଝିପାରିଲେନାହିଁ ତାଙ୍କ ନିଦ୍ରା ଭଙ୍ଗର କାରଣ । ଗୋଟାଏ କିଛି କେଉଁଠି ଘଟିଛି ନିଶ୍ଚୟ, ସେଥିରେ ଆଦୌ ଭୁଲ ନାହିଁ-- କିନ୍ତୁ କେଉଁଠି ଘଟିଛି ? କେମ୍ପଙ୍କ ଘରେ ଘଟିନଥିବ ବୋଲି କିଏ କହିପାରିବ ?"

ଅଦୃଶ୍ୟ ମାନବ ତାଙ୍କୁ ଖୁନ୍ କରିବାର ସଙ୍କଳ୍ପ ପତ୍ର ଜନସାଧାରଣଙ୍କୁ ଜଣାଉଥିଲା । ଯଦି କିଛି ଘଟିଥାଏ ତାହା ନିଶ୍ଚୟ ଘଟିଥିବ କେମ୍ପ୍‌ଙ୍କ ଘରେ । ବିଛଣା ଉପରେ ପଡ଼ିରହି ହାଇଡସ କାନେଇଲେ କେଉଁଆଡ଼ୁ ଶବ୍ଦ ଆସୁଛି ଜାଣିବା ପାଇଁ । ଉଦ୍ବେଳିତ ଶେଷରେ ସିଧା ହୋଇ ବସିପଡ଼ିଲେ । କି ଆଶ୍ଚର୍ଯ୍ୟ ଘଟଣା ସେ ଦେଖିବାକୁ ପାଉଛନ୍ତି, କେମ୍ପଙ୍କ ଘରେ । ସେ ଘର ସେ ପଣିଷ ରହୁଛନ୍ତି, ଆଜ ସେ ଘର ଦେଖି କେହି ସେକଥା ଭାବିପାରିବେନାହିଁ । ବାସିନ୍ଦାମାନେ ଘର ଛାଡ଼ିବାକୁ ଯେପରି ବାଧ୍ୟ ହୋଇଛନ୍ତି । ଗୋଟିଏ ଦଙ୍ଗାହାଙ୍ଗାମା ଫଳରେ ଘରର ପ୍ରତ୍ୟେକଟି ଝରକା ଭଙ୍ଗା ।

ଘରଟା ଆଡ଼କୁ ଟିକିଏ ଦୃଷ୍ଟି ଦେଇ ହାଇଡସ କହିଲେ — "କୋଡ଼ିଏ ମିନଟ୍‌ରୁ ବେଶି ସମୟ ମୁଁ ଶୋଇନି । ଶୋଇବା ଆଗରୁ ମୁଁ ଦେଖିଥିଲି ସବୁ ଠିକ ଥିଲା । ଏବେ ଡାକ୍ତର କେମ୍ପଙ୍କ ଘରଆଡ଼ୁ ଭାସିଆସୁଛି କାଚ ଝରକା ଉପରେ ପ୍ରଚଣ୍ଡ ପ୍ରହାରର ଶବ୍ଦ । ଝଣଝଣ କରି ଖସି ଖସି କାଚ ଯେପରି ଭାଙ୍ଗି ପଡ଼ୁଛି । ଅତିଶୟ ବିସ୍ମିତ ହେଲେ ହାଇଡସ । ଘୁରି ରହିଲେ ସେ ଆଡ଼କୁ ଅପଲକ ନେତ୍ରରେ । ଦୃଷ୍ଟ ଦୃଷ୍ଟ ଗୋଟିଏ ଅଦ୍ଭୁତ କାଣ୍ଡ ସେ ଦେଖିବାକୁ

ଯାଇଲେ । ବୈଠକଖାନା ଘରର ଝରକାଟି ସଶବ୍ଦରେ ଖୋଲିଗଲା ।
ଘରର ବାସିନ୍ଦା ସେହି ଝରକାବାଟେ ବାହାରକୁ ଗୁଳିଗଲା ଖାର
ବେଗରେ ଓ ଅଳ୍ପ କେତେ ସେକେଣ୍ଡ ମଧ୍ୟରେ ସେ ଅଦୃଶ୍ୟ
ହୋଇଗଲା ।

ତାପରେ ଝରକା ନିକଟରେ ଦେଖାଗଲେ ନିଜେ ଡାକ୍ତର
କେମ୍ପ । ସେ ସେହି ଝରକା ଦେଇ ବଗିଚ୍ଚ ଭିତରକୁ ଡେଇଁ-
ପଡ଼ିଲେ ଓ ପ୍ରାଣ ବିକଳରେ ଦୌଡ଼ିଲେ ।

"ତାହେଲେ ଅଦୃଶ୍ୟ ମାନବ ଗପଟା ବାଜେ ନୁହେଁ—
ନିଶ୍ଚିତ ସତ୍ୟ । ପ୍ରକୃତରେ ଅଛି ଏବଂ ସେ ଲୋକଙ୍କୁ ଧାବିତ
କରୁଛି ।" ମନକୁ ମନ କହିଲେ ସ୍ନିଲସ ।

ସ୍ନିଲସ ଏଣେତେଣେ ଗୁହୁଁଛନ୍ତି ଏତିକବେଳେ ଧଡ଼୍ ଧଡ଼୍
ଶବ୍ଦ ଶୁଣାଗଲା ଦରଜା ଉପରେ । କିଏ ଯେପରି ପ୍ରଚଣ୍ଡ ଆଘାତ
କରୁଛି ଦରଜା ଉପରେ । ସେ ଚିତ୍କାର ଆରମ୍ଭ କରିଦେଲେ,
"ସବୁ ଦରଜା, ସବୁ ଝରକା ବନ୍ଦ କରିଦିଅ; ତାଲା ଦେଇଦିଅ ।
ଅଦୃଶ୍ୟ ମାନବ ଆସିଗଲାଣି—ଆଉ ରକ୍ଷା ନାହିଁ ।"

ସଙ୍ଗେ ସଙ୍ଗେ ନାନା କଣ୍ଠରେ ନାନା ଚିତ୍କାର, ନାନା ରକମର
ହୁକୁମ । ଲୋକମାନଙ୍କର ଦୌଡ଼ାଦୌଡ଼ି ଶବ୍ଦ । ବାରଣ୍ଡା ନିକଟରେ
ଥିବା ଝରକା ନିକଟକୁ ଦୌଡ଼ିଗଲେ ସ୍ନିଲସ ନିଜେ । ଉଦ୍ଦେଶ୍ୟ
ସେହି ଝରକାଟାକୁ ବନ୍ଦ କରିଦେବା । ଝରକା ବନ୍ଦ କରିବାକୁ
ଯାଉଛନ୍ତି, ଏହିପରି ସମୟରେ ଶୁଣାଗଲା କେମ୍ପଙ୍କ ଚିତ୍କାର—
"ରକ୍ଷାକର, ରକ୍ଷାକର ।" ସ୍ନିଲସ ଧଡ଼ାସ୍ କିନା ଝରକା ବନ୍ଦ କରି
ଦେଇ କହିଲେ, "ଏଠାରେ ନୁହେଁ, ଏଠାରେ ନୁହେଁ । ମୁଁ ଖୁବ୍
ଦୁଃଖିତ ଯେ ଅଦୃଶ୍ୟ ମାନବର କୋପରେ ପଡ଼ିଛନ୍ତି ଆପଣ, କିନ୍ତୁ

ଆପଣଙ୍କୁ ମୁଁ ଆଶ୍ରୟ ଦେଇପାରିବିନାହିଁ । ପିଲପିଲିଙ୍କୁ ନେଇ ତ ମୁଁ ଘର କରିଛି ।”

ଝରକା କବାଟରେ ମୁଣ୍ଡ ପିଟିବାକୁ ଲାଗିଲେ କେମ୍ପ । ଭୟରେ ସେ ହୋଇଯାଇଥିଲେ ପାଗଳଙ୍କ ପରି; କିନ୍ତୁ ହିଲାସ ଦ୍ୱାର ଖୋଲିଲେ ନାହିଁ । ଅବଶେଷରେ ନିରୁପାୟ ଡାକ୍ତର ସଦରଦରଜା ଦେଇ ଦୌଡ଼ିଗଲେ ପ୍ରଧାନ ରାସ୍ତାକୁ । ସେହି ରାସ୍ତା ପାହାଡ଼ ନିକଟରୁ ବାହାରିଯାଇଛି ବାର୍ଡକ ସହର ପର୍ଯ୍ୟନ୍ତ । ଏଣେ ହିଲାସ ଆତଙ୍କରେ ତାଙ୍କର ଚକ୍ଷୁ ବିସ୍ଫାରିତ କରି ଝରକାର ଫାଙ୍କ ବାଟେ ଦେଖୁଛନ୍ତି—ଯୋଡ଼ାଏ ପାଦ ଚାଲିଛି ତାଙ୍କ ବଗିଚା ଭିତରେ । ସେ ପାଦ ଦେଖିପାରୁ ନାହାନ୍ତି; କିନ୍ତୁ ସେହି ପାଦର ଚାପରେ ଚାରାଚଣ୍ଡି ଗୁଡ଼ିକ ଭୂଇଁଉପରେ ଶୋଇପଡ଼ୁଛି । ଏହା ପରେ ହିଲାସ ଘରର ସବୁଠାରୁ ମଜଭୁତ କୋଠରୀଭିତରେ ପଶିଯାଇ ଦରଜା ବନ୍ଦକରି ଦେଲେ ଭିତରୁ ।

ଏଣେ କେମ୍ପ ପ୍ରଧାନ ରାସ୍ତାରେ ପହଞ୍ଚିବା ପରେ ମନ୍ଥର ଗତିରେ ଚାଲିବାକୁ ଲାଗିଲେ, କାରଣ ରାସ୍ତାରେ ବହୁତ ଲୋକ ଅଛନ୍ତି । ଆଜି ଏକା ଏକା ଯୁଦ୍ଧ କରିବାକୁ ପଡ଼ିବନି ତାଙ୍କୁ ଆଉ ତ ସ୍ୱୀ ନିହାତ । ତାଙ୍କର ଊର୍ଦ୍ଧ୍ୱଶ୍ୱାସ ବହୁଛି । ଦୌଡ଼ିବା ଅଭ୍ୟାସ ନାହିଁ ତାଙ୍କର । ତଥାପି ଆଜି ମନ ଦୌଡ଼ି ନାହାନ୍ତି ସେ । ଦେହ ମୁଣ୍ଡରୁ ଝରୁଛି ଧାର ଧାର ହୋଇ ଝାଳ । ତାଙ୍କ ପଛରେ ଚାଲିଛି ଅଦୃଶ୍ୟ ମାନବ । ତାଙ୍କୁ ଦେଖିବାକ୍ଷଣି ପୁଣି ଦୌଡ଼ିବାକୁ ଆରମ୍ଭ କଲେ କେମ୍ପ ଯଦିଓ କ୍ଳାନ୍ତ ହୋଇଯାଇଥିଲେ ସେ । ସେତେବେଳେ ମଧ୍ୟ ଶୁଣାଯାଉଥିଲା ଅଦୃଶ୍ୟ ମାନବର ପଦଧ୍ୱନି ତାଙ୍କ ପଛରେ !

ସମ୍ମୁଖରେ ଯାଉଥିଲେ ଦଳେ ନାବିକ । ସେମାନଙ୍କ ଭିତରେ ଦେଇ ଦୌଡ଼ୁଛନ୍ତି କେମ୍ପ । ଦୌଡ଼ିଲାବେଳେ କିଏ ଯେପରି ଥକା

କରି କହିଲା –"ଭଦ୍ରଲୋକଙ୍କ ଦୌଡ଼ିବା ଦେଖି ମନେହେଉଛି ବାଘ ତାଙ୍କ ପିଛୁ ଧରିଛି ।" ଆଉ ଜଣେ କହିଲା, "ଏ କଣ ନା ଅଦୃଶ୍ୟ ମାନବ ?" ଉତ୍ତର କେମ୍ପ ସାହାଯ୍ୟ ଆଶାରେ ଚିତ୍କାର କଲେ—

"ପ୍ରକୃତରେ ଅଦୃଶ୍ୟ ମାନବ ! ସେ ମୋତେ ଧରି ପକାଇବ ନିଶ୍ଚୟ । ଧରିବା ପରେ ସଙ୍ଗେ ସଙ୍ଗେ ଦୟାମାୟା ନ ରଖି ଖୁନ୍ କରିଦେବ ।"

ସେହି ମୁହୂର୍ତ୍ତରେ ଗୋଟିଏ ହାତରେ ତାଙ୍କର ତଣ୍ଟି ଚଟକରି ଧରିଲା ଅଦୃଶ୍ୟ ମାନବ । ଆଉ ଅନ୍ୟ ହାତରେ ଏକ ପ୍ରଚଣ୍ଡ ଘୁଷି ବସାଇଦେଲା ତାଙ୍କ କାନ ଉପରେ । ଦୂରକୁ ଛିଟିକି ପଡ଼ିଲେ କେମ୍ପ ଆର୍ତ୍ତନାଦ କରି, କିନ୍ତୁ ପୂର୍ବରୁ ସତର୍କବାଣୀ ମିଳିଥିଲା ନାଗରିକମାନଙ୍କର । କେମ୍ପଙ୍କ ଆର୍ତ୍ତନାଦ ଶୁଣି ସେମାନେ ସତର୍କ ହୋଇଗଲେ । କେମ୍ପ କଚଡ଼ା ଖାଇ ତଳେ ପଡ଼ିବାର ସେମାନେ ସ୍ପଷ୍ଟ ଭାବରେ ଦେଖିପାରିଲେ, କିନ୍ତୁ ଆତତାୟୀ ଦେଖାଯାଉନାହିଁ । ଆତତାୟୀ ଯେହି ଅଦୃଶ୍ୟ ମାନବ ଛଡ଼ା ଆଉ କିଏ ହୋଇପାରେ ?

କେହି ଜଣେ ହୁଙ୍କାର କରିଉଠିଲା—"ଧରିପକାଅ ଦୁଷ୍ମନକୁ ।"

ନାଗରିକମାନଙ୍କ ମଧ୍ୟରେ ଜଣେ ଥିଲେ ଲମ୍ବା, ଚଉଡ଼ା ମଣିଷ । ସେ କେଉଁଠାରୁ ତତ୍କ୍ଷଣାତ୍ ଗୋଟିଏ କୋଦାଳ ଯୋଗାଡ଼ କରିପାରିଲେ । ଚତୁର୍ଦ୍ଦିଗରୁ ଆହୁରି ଅନେକ ନରନାରୀ ଦୌଡ଼ି ଆସିଲେ । ଲାଠି ଥିଲା ସେମାନଙ୍କ ହାତରେ ।

"ଘେରି ପକାଅ । ଘେରି ପକାଅ ।"—ଚିତ୍କାର ବହୁ କଣ୍ଠରେ ।

ସମସ୍ତେ ଦେଖିଲେ ଗୋଟିଏ ସ୍ଥାନକୁ ଯେଉଁ ସ୍ଥାନର ମଝିରେ ପଡ଼ିଛନ୍ତି ଡାକ୍ତର କେମ୍ପ୍ ଶବମାତ୍ର ହୋଇ । ଉଠିବାକୁ ଚେଷ୍ଟା କଲେ ମଧ୍ୟ ଉଠି ପାରୁନାହାନ୍ତି ସେ । କୋଦାଳଧାରୀ ଅନୁମାନ କଲା ଯେ ଆତତାୟୀ ନିଶ୍ଚୟ କେମ୍ପଙ୍କ ଗୁଡ଼ଉପରେ ମାଡ଼ି ବସି ତଣ୍ଟି ଚିପି ଧରିଛି ତାଙ୍କର । ତାହା ସତ ହୋଇଥାଏ ଯେବେ ଆତତାୟୀର ମୁଣ୍ଡଟା ନିଶ୍ଚୟ ଥିବ କେମ୍ପଙ୍କ ଗୁଡ଼ର ଦେଢ଼ ବା ଦୁଇ ଫୁଟ ଉପରେ । ଏହା ଅନ୍ଦାଜ କରି ସେଇ ଧାଙ୍ଗୁଆ କୋଦାଳଟି ସେ ଚକ୍ରାକାରରେ ଘୂରାଇବାକୁ ଲାଗିଲେ—କେମ୍ପଙ୍କ ଦେହର ଅନ୍ଦାଜ ଦୁଇଫୁଟ ଉପରେ । ଥରେ ଦୁଇଥର ଘୂରାଇବା ପରେ ଅଦୃଶ୍ୟ କଣ୍ଠରେ ଆର୍ତ୍ତନାଦ ଶୁଣାଗଲା "ଓ—ହୋ ହୋ ହୋ—ଓ ।" ସଙ୍ଗେ ସଙ୍ଗେ ରକ୍ତର ସ୍ରୋତ ଛୁଟିଲା । କେଉଁଠାରୁ ଆସୁଛି ରକ୍ତର ସ୍ରୋତ ? ସେଇଟା କାହା ଚକ୍ଷୁରେ ପଡୁ ନଥିଲେ ହେଁ ପ୍ରକୃତରେ ରକ୍ତ ବହୁଛି ।

ଗ୍ରିଫିନ ମୁଣ୍ଡରେ ଲାଗିଛି ଚୋଟ ମାରାତ୍ମକ ଭାବରେ । କେମ୍ପଙ୍କ ତଣ୍ଟିରୁ ତା'ର ବଜ୍ରମୁଷ୍ଟି ଶିଥିଳ ହୋଇ ଆସୁଛି କ୍ରମେ କ୍ରମେ । କେମ୍ପ ବୁଝିଲେ ବର୍ତ୍ତମାନ ତାଙ୍କୁ ସୁବର୍ଣ୍ଣସୁଯୋଗ ମିଳିଛି । ଦେହର ସବୁ ଶକ୍ତି ଏକତ୍ର କରି ସେ ଦେଲେ ଗୋଟିଏ ପ୍ରଚଣ୍ଡ ଧକ୍କା । ସେହି ଧକ୍କାରେ ତାଙ୍କ ଗୁଡ଼ ଉପରୁ ଲେଉଟି ପଡ଼ିଲା ଗ୍ରିଫିନ୍ । "ଏଇ ଯେ ! ଏଇଯେ ସେ ।"—ଚିତ୍କାର କରିଉଠିଲେ କେମ୍ପ—ନିଜର ପାର୍ଶ୍ୱରେ ଥିବା ଜାଗା ଆଡ଼କୁ ଆଙ୍ଗୁଳି ନିର୍ଦ୍ଦେଶ କରି । ସଙ୍ଗେ ସଙ୍ଗେ ସେହି ଜାଗା ଉପରକୁ ଡେଇଁ ପଡ଼ିଲେ ପ୍ରାୟ ଅଠଜଣ ଲୋକ । ଚାପିଧରିଲେ ଗୋଟିଏ ଅଦୃଶ୍ୟ କିନ୍ତୁ ହୃଷ୍ଟପୁଷ୍ଟ ବଳବାନ ଶରୀରକୁ ।

ସେତେ ଆହତ ହେଲେ ମଧ୍ୟ, ଗ୍ରିଫିନ୍‌ର ବାହୁବଳ ଏକବାରେ ଉଭେଇ ଯାଇ ନ ଥିଲା । ହୁଂକାରକରି ଏକ ପ୍ରଚଣ୍ଡ ଧକ୍‌କାରେ ନିଜ ଉପରୁ ଦୁଇଟି ଲୋକଙ୍କୁ ସେ ଫୋପାଡ଼ିଦେଲା ଦୂରକୁ । ବାକି ଦୁଇ ତିନି ଜଣ ଭୟ ପାଇ ଉଠି ଠିଆହୋଇଗଲେ । ଗ୍ରିଫିନ୍ ଦେଖିଲା—ପଳାୟନର ପଥ ପରିଷ୍କାର କିନ୍ତୁ ଦୌଡ଼ି ପଳାଇବା ପୂର୍ବରୁ ଜଣକ ଲାଠିର ଏକ ଶକ୍ତ ପ୍ରହାର ପଡ଼ିଲା ତା'ର ମୁଣ୍ଡ ଉପରେ । ସେ ପୁଣି ଧରାଶାୟୀ ହେଲା । ବର୍ତ୍ତମାନ ତାର ଆର୍ତ୍ତନାଦ ଥିଲା ଆଗଠାରୁ ଅଧିକ ମର୍ମଭେଦୀ । ସଙ୍ଗେ ସଙ୍ଗେ ଏହି ସ୍ଥାନଟିରେ ପଡ଼ିଲା ଲାଠିର ପ୍ରହାର ଗୋଟିକ ପରେ ଗୋଟିଏ ।

କେମ୍ପ ପାଟିକରି ଉଠିଲେ—"ରହ, ରହ, ଲୋକଟାକୁ ମାରି ଦିଅନାହିଁ ତୁମେମାନେ । ଦଣ୍ଡଦେବାର ମାଲିକ ହେଲା ଅଦାଲତ । ଆମ୍ଭମାନଙ୍କର ଦାୟିତ୍ୱ ତାକୁ ଧରି ପୁଲିସ ହାତରେ ଛାଡ଼ିଦେବା । ମାତ୍ର ସେତେବେଳକୁ ଗ୍ରିଫିନ୍ ଦେହରେ ଆଉ ପ୍ରାଣ ନ ଥିଲା ।

ଧୀରେ ଧୀରେ ଅଦୃଶ୍ୟ ମାନବର ଅଙ୍ଗପ୍ରତ୍ୟଙ୍ଗ ଦୃଷ୍ଟିଗୋଚର ହେଲା । କିଏ କହିଲା ତା'ର ପାଦ ଦେଖି ପାରୁଛି, କିଏ କହିଲା ତାର ହାତ ଦୁଇଟି ସ୍ପଷ୍ଟ ଭାବରେ ତାକୁ ଦେଖାଯାଉଛି । କ୍ରମେ ସମ୍ପୂର୍ଣ୍ଣ ଦେହଟା ସ୍ପଷ୍ଟ ଭାବରେ ଫୁଟି ଉଠିଲା ଜନତାର ଚକ୍ଷୁ ସାମନାରେ । ସେହି ଯୁବକର ଚେହେରା ଦେଖି କେମ୍ପ ତାକୁ ବନ୍ଧୁ ଦିନ ତଳର ସାଥି ଗ୍ରିଫିନ୍ ବୋଲି ଭଲଭାବରେ ଚିହ୍ନି ପାରିଲେ । ତାର ମୁଣ୍ଡର କ୍ଷତ ଦେଇ ଝରୁଥିଲା ରକ୍ତର ସ୍ରୋତ ସେତେବେଳେ ମଧ୍ୟ । ଜଣେ ହିକେଟାର୍ସଠାରୁ ଖଣ୍ଡିଏ ଚଦର ଆଣି କେମ୍ପ ଢାଙ୍କିଦେଲେ ହତଭାଗ୍ୟ ଗ୍ରିଫିନ୍‌ର ମୃତ ଶରୀର ଉପରେ !

---